# କୀର୍ତ୍ତନ ନିମାଇଁ ସନ୍ନ୍ୟାସ

ବା

## ଉଦଣ୍ଡ ପ୍ରେମ ସଂକୀର୍ତ୍ତନ



# କୀର୍ତ୍ତନ ନିମାଇଁ ସନ୍ନ୍ୟାସ

ବା

# ଉଦଣ୍ଡ ପ୍ରେମ ସଂକୀର୍ତ୍ତନ

ନୂତନ ମୁଦ୍ରଣ




ଲେଖକ :—

ବାବାଜୀ ଶ୍ରୀବୈଷ୍ଣବ ଚରଣ ଦାସ





ପ୍ରକାଶିକ :—

ଧମଗ୍ରନ୍ଥ ଷ୍ଟୋର

କଟକ-୨

ମୂଲ୍ୟ ଟ ୧-୫୦ ପଇସା ଏକଟଙ୍କା ପଚାଶ ପଇସା

# ❀ ଭୂମିକା ❀

'ସଂସାରସିନ୍ଧୁ ତରଣେ ହୃଦୟଂ ଯଦି ସ୍ୟାତ୍
ସଂକୀର୍ତ୍ତନାମୃତ-ରସେ ରମତେ ମନଶ୍ଚେତ୍ ।
ପ୍ରେମାମ୍ବୁଧୌ ବିହରଣେ ଯଦି ଚିତ୍ତ ବୃତ୍ତି
ଶ୍ଚୈତନ୍ୟଚନ୍ଦ୍ର-ଚରଣେ ଶରଣଂ ପ୍ରୟାନ୍ତୁ ।

ସନ୍ନ୍ୟାସୀ ବେଶ ର ଶିରୋମଣି ଶ୍ରୀ ଶ୍ରୀ ଶଚୀନନ୍ଦନ ଗୌରହରି କଳି ପୀଡ଼ିତ ନରନାରୀମାନଙ୍କର ଏକମାତ୍ର ଆଶ୍ରୟ । ସେହି ଅପାର କରୁଣାମୟ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁ ଜୀବର ମଙ୍ଗଳ ନିମନ୍ତେ ଚବିଶ ବର୍ଷ ବୟସରେ ସ୍ୱୟଂ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରି ହୃଦୟ ବିଦାରକ ଲୀଳାରେ ପ୍ରବୃତ୍ତ ହୋଇଥିଲେ ହାୟ, ଆମ୍ଭ ଗୌର ଭଗବାନ ପତିତଜନମାନଙ୍କ ଲାଗି କେତେ ଦୁଃଖ ସହି ନାହାନ୍ତି ! ଯେଉଁ ଶ୍ରୀଅଙ୍ଗଟି ବ୍ରଜ ବିଳାସରେ ଓ ପ୍ରାଥମିକ-ନବଦ୍ୱୀପ ଲୀଳାରେ ସଦା ଚନ୍ଦନ ଚର୍ଚ୍ଚିତ ହୋଇଥାଏ, ଆଜି ତାହା ଧୂଳି ଧୂସରିତ ! ବ୍ରଜଲୀଳାରେ ଯେ କି ନିରନ୍ତର ମଣି ଆଭରଣେ ଅଳଂକୃତ, ଅଧୁନା ସେ ସ୍ୱପ୍ନରେ ମଧ୍ୟ ସେ ଭୂଷଣ ସ୍ପର୍ଶ କଲେ ନାହିଁ । ଐଶ୍ୱର୍ଯ୍ୟ ବିଳାସ ପରିକର ଭରିଜନ ଗୃହ ସମ୍ପଦ ବାତ୍ସଲ୍ୟମୟୀ ଶଚୀ ମାତା ଓ ପ୍ରାଣପ୍ରିୟତମା ବିଷ୍ଣୁପ୍ରିୟାଙ୍କୁ ପରିତ୍ୟାଗ କରି ଆମ୍ଭ ସୁକୁମାର ଗୌରକୃଷ୍ଣ ତରୁତଳବାସୀ ହୋଇଲେ କାହିଁକି ? କେବଳ ପାପୀ ତାପୀମାନଙ୍କ ପାପ ତାପ ମୋଚନ ପାଇଁ ସିନା ? ବର୍ତ୍ତମାନ ଏ ଦୀନ ଅକିଞ୍ଚନ ସେହି ଗୌରଚନ୍ଦ୍ରଙ୍କର ସନ୍ନ୍ୟାସ ଲୀଳାବଳୀ କୀର୍ତ୍ତନ ଗୀତରେ ଲେଖିବା ସାହାସୀ ହେଲି । ସଂକୀର୍ତ୍ତନର ପିତା ବ୍ରଜପ୍ରେମ ଲମ୍ପଟ ଶ୍ରୀ ଶ୍ରୀ ଗୌରାଙ୍ଗ ମହାପ୍ରଭୁ ଯାହା ଯାହା ଲେଖାଇଲେ ତାହାହିଁ ଏ ଅଧମ ବର୍ଣ୍ଣନା କରିଅଛି । ଭଗବଦ୍ ଭକ୍ତବୃନ୍ଦ ପାଠକରି ଅଥବା ଶ୍ରବଣ କରି ଗୌର ପ୍ରେମ କରୁଣାମୟ ଲୀଳାରେ ହୃଦୟ ରସାର୍ଦ୍ର କଲେ ଏହି ଗୌର-ନାମ-ଧନ କାଙ୍ଗାଳର ଆଶା ସଫଳ ହେବ ।ଇତି।

ପ୍ରକାଶ ଥାଉକି କୀର୍ତ୍ତନ ନନ୍ଦୀ-ଗାୟକ ଗଣ ସଂକୀର୍ତ୍ତନ ମଣ୍ଡଳୀରେ ଏହି କୀର୍ତ୍ତନ ପଦାବଳୀ ଗାନକରି ଏ ଜୀବାଧମକୁ କୃତାର୍ଥ କରନ୍ତୁ ।

| | |
|---|---|
| ଶ୍ରୀ ଶ୍ରୀ ରାଧାଗୋବିନ୍ଦ ମଠ | ଶ୍ରୀ ବୈଷ୍ଣବଚରଣ ଦାସ ଗୋସ୍ୱାମୀ |
| ପୋ: ଅ: କୋଟସାହି, କଟକ | ତା ୨୫ । ୯ । ୪୧ ଗୁରୁ ପଞ୍ଚମୀ |

# ନିମାଇଁ-ସନ୍ନ୍ୟାସ

## କୀର୍ତ୍ତନ

### ପୂର୍ବ-ଖଣ୍ଡ



### ମଙ୍ଗଳାଚରଣଂ

ଭାଲଂ ଯସ୍ୟ ପ୍ରଶସ୍ତଂ ଶଶଧର ବଦନଂ ଉନ୍ନତ ଘର୍ଣ ନାସାଂ ।
ବକ୍ଷୋଷ୍ଠଂ କମ୍ବୁକଣ୍ଠଂ କନକ ଗିରିନିଭଂ ଫୁଲ୍ଲପଙ୍କୋରୁହାଃକ୍ଷଂ ॥
ଆଜାନୁସ୍ପର୍ଶ ହସ୍ତଂ କଟିତଟ ବଳୟଦ୍ୟୁକ୍ତ କୌପୀନ ବାସଂ ।
ବନ୍ଦେ ଶ୍ରୀ ଗୌରଚନ୍ଦ୍ରଂ ନିଖିଳଂ ଜନମନ-ସ୍ତାପ ସନ୍ତାପ ମୋରଂ ॥



( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ଶୁଣ ଭକ୍ତଗଣ ସ୍ଥିରକରି ମନ ଗୌରାଙ୍ଗ ସନ୍ନ୍ୟାସ ଲୀଳା,
ସୁଧାଠାରୁ ସ୍ୱାଦ ଶ୍ରବଣେ ଯେ ପଦ ଦ୍ରବାଏ ମୁରୁଜ ଶିଳା ହେ ।୧।
ଶ୍ରୀ ଶଚୀ ନନ୍ଦନ ତ୍ରିଜଗ ବନ୍ଦନ ଭକ୍ତଙ୍କ ହୃଦ ଚନ୍ଦନ ।
ଯେପରି ସନ୍ନ୍ୟାସୀ ହେଲେ ଗୌର ଶଶୀ କରିବଇଁ ତା ବର୍ଣ୍ଣନ ।୨।
ଆପଣେ ଆଚରି ଧର୍ମ କର୍ମ ଶିକ୍ଷ ଆନେ ଦିଆଇଲେ ଶିକ୍ଷା ।
ଭାରତୀ ଗୋସାଇଁ ନିକଟରେ ଯାଇଁ ଯେହ୍ନେ ନେଲେ ତ୍ୟାଗ ଦୀକ୍ଷା ॥

ତା ସବୁ ବିସ୍ତାର ଲେଖୁଛୁ ବସୁର ଶ୍ରୀଗୁରୁ ଚରଣ ଚିନ୍ତ ।
କହେ ଦୀନହୀନ ବୈଷ୍ଣବ ଚରଣେ ଅକଞ୍ଚନ ମୂଢ଼ ମତ ହେ ।୯।

( ରାଗ—ମଙ୍ଗଳ, ତାଳ—ତ୍ରିପୁଟା )

ହର୍ଷ ମନେ ଏକ ଦିନେ କେଶବ ଭାରତୀ ।
ଆସିଲେ ସୁଯୋଗ ଦେଖି ଶ୍ରୀନମାଇଁ କତ ହେ । ୧ ।
ମହା ଶୁଦ୍ଧମତ ମହା ତେଜସ୍ୱୀ ଗୋସାଇଁ ।
ମହା ଭାଗବତ ସେ ଯେ ଭୁବନ ବିଜୟୀ ହେ । ୨ ।
ତାଙ୍କ ପୂର୍ବାର୍ଜିତ ପୁଣ୍ୟ କେ ପାରିବ କହି ।
ଯାହାଙ୍କର ଶିଷ୍ୟ ହେବେ ତ୍ରିଜଗତ ସାଇଁ ହେ । ୩ ।
ଆଚମ୍ବିତେ ପ୍ରବେଶିଲେ ନଦୀୟା ନଗରେ ।
ନୟନ ଯୁଗଳୁ ତାଙ୍କ ପ୍ରେମ ଅଶ୍ରୁ ଝରେ ହେ । ୪ ।
ସେହି ସନ୍ନ୍ୟାସୀବରଙ୍କୁ ଦେଖି ନର ନାରୀ ।
ଚରଣେ ପ୍ରଣାମ କଲେ ହୃଦେ ଭକ୍ତି ଭରି । ୫ ।
ସମସ୍ତଙ୍କୁ ଆଶୀର୍ବାଦ କରି ସେ ଭାରତୀ ।
ଶଚୀ ଦେବୀଙ୍କ ପୁରକୁ ଗମନ କରନ୍ତି ହେ । ୬ ।
ଭାରତୀ ଗୋସାଇଁଙ୍କର ଶ୍ରୀଚରଣ ଧୂଳି ।
ଦୁଃଖୀ ବଇଷ୍ଣବ ଦାସ ଶିରେ ଦିଏ ବୋଲି ହେ । ୭ ।

ଯଥା—( ରାଗ, ତାଳ ତ୍ରିପୁଟା )

ଶ୍ରୀ ଶଚୀ ଦେବୀଙ୍କ ପୁରେ ଅତି ଆନନ୍ଦ ମନରେ
ପ୍ରବେଶ ହୋଇଲେ ସେ ସନ୍ନ୍ୟାସୀ ।
ମହାପ୍ରଭୁ ବିଶ୍ୱମ୍ଭର, ଦେଖି କହିଲେ ସତ୍ୱର
ସେହିକାଳେ ଭକ୍ତି ଚିତ୍ତରେ ଭାସି ହେ । ୧ ।

ଶ୍ରୀ ଗୌରଚନ୍ଦ୍ରଙ୍କ କାନ୍ତି ଦେଖି କେଶବ ଭାରତୀ
ମୃଦୁସ୍ୱରେ କହନ୍ତି ବଚନ ।
ତୁମ୍ଭେ କବା ଶୁକ ଯତି, କବା ପ୍ରହ୍ଲାଦ ମୂରତି,
ବୋଲାଉଛ ଶଚୀଙ୍କ ନନ୍ଦନ ହେ ।୨।
ଏହା ଶୁଣି ଗୌରଙ୍କର, ନେତ୍ର ଯୁଗୁଁ ଅଶ୍ରୁ ନୀର,
ବହିଗଲା ଧାର ଧାର ହୋଇ ।
କାନ୍ଦ ହୋଇଲେ ଅଧିର, ସେ ଯେ ବ୍ରହ୍ମାଣ୍ଡ ଠାକୁର
ଦେଖି ଚମକେ ଭାରତୀ ଗୋସାଇଁ ହେ ।୩।
ଏ ନିଶ୍ଚୟ ନାରାୟଣ, ହୋଇଛନ୍ତି ଅବତୀର୍ଣ୍ଣ
ଧରା ଭାର ହରିବାର ଲାଗି ।
ମହାପୁରୁଷ ଲକ୍ଷଣ, ଦେଖାଯାଏ ବିଲକ୍ଷଣ,
ଅନ୍ତରେ ସାତ୍ତ୍ୱିକ ଉଠେ ଜାଗି ହେ । ୪ ।
ସମ୍ଭାଳି ନପାରି ତହିଁ, ଭଣି ଭାରତୀ ଗୋସାଇଁ,
ତୁମ୍ଭେ ନିଶ୍ଚେ ପ୍ରଭୁ ଭଗବାନ ।
ଏହି ଅନୁମାନ ମୋର, ସର୍ବଜନ ପ୍ରାଣେଶ୍ୱର,
ଏ ବିନୁ ମୁଁ ନ ବୋଲିବି ଆନ ହେ ।୫।
ତୁମ୍ଭେ ବ୍ରହ୍ମାଣ୍ଡର ସାଇଁ, ଏଥିରେ ସଂଶୟ ନାହିଁ,
ଆହେ ଦୟାମୟ ଦୀନବନ୍ଧୁ ।
କେଶବ ଭାରତୀ ଉକ୍ତି, ବୈଷ୍ଣବ ଦାସ ବଦନ୍ତି,
ମୋରେ ଦୟାକର କୃପାସିନ୍ଧୁ ହେ ।୬।



( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ଏ ବଚନ ଶୁଣି, ଶଚୀ ହୃଦ-ମଣି;
ଅତ୍ୟନ୍ତ କାତର ମନେ ।
ସନ୍ନ୍ୟାସୀ ଚରଣ, ପ୍ରଣମି ତତ୍‌କ୍ଷଣେ;
ଚଳିଲେ ନିଜସଦନେ ହେ ।୧।

ବିଦାୟ ହୋଇଲେ, କେଶବ ଭାରତୀ;
କଣ୍ଟକ ନଗର ଦିଗେ ।
ଘରେ ଯାଇ କରି, ପ୍ରଭୁ ଗୌରହରି;
ସନ୍ନ୍ୟାସୀର ଅନୁରାଗେ ହେ ।୨।

ମନେ ମନେ ପୁଣ କଲେ ଅନୁମାନ
ନଦୀୟା ଗଗନ ଶଶୀ ;
ଆଜଠାରୁ ମୁହିଁ ସର୍ବ ତ୍ୟାଗୀ ହୋଇ
ହେବି ନବୀନ ସନ୍ନ୍ୟାସୀ ହେ ।୩।

ନବଦ୍ୱୀପ ଚନ୍ଦ୍ର ମାନସ ମୁକୁନ୍ଦ
ଜାଣି ପାରିଲେ ଇଙ୍ଗିତେ ।
ରଖିବା ମାନସେ ତାଙ୍କୁ ଗୃହବାସେ
ପ୍ରକାଶ କଲେ ଭରତେ ହେ । ୪ ।

ଆପଣା ବିଶ୍ୱାସୀ ଯେ ନଦୀୟା ବାସୀ
ତାଙ୍କ ସନ୍ନିଧିରେ ଯାଇ ।
ଗୌରାଙ୍ଗ ବିଷୟ କଲେକ ପ୍ରଚାର
ଆନ କେହି ନ ଜାଣଇ ହେ ।୫।

ସଂକୀର୍ତ୍ତନ ଗୋଷ୍ଠି ଭକ୍ତଜନେ ଭେଟି
କହନ୍ତି ମୁକୁନ୍ଦ ସର୍ବ ।
ଶିରେ ମାରି ହାତ ହୁଏ ବ୍ୟାକୁଳିତ
ଅଧମ ଦାସ ବୈଷ୍ଣବ ହେ ।୬।

( ରାଗ—ମଙ୍ଗଳ ଗୁର୍ଜ୍ଜରୀ, ତାଳ—ଏକତାଳୀ )

ଶ୍ରୀ ଗୌରାଙ୍ଗ ସନ୍ନ୍ୟାସ ହୋଇବେ ଏହି କଥା ।
ନ ଜାଣନ୍ତି ଥୋକେ ଲୋକେ ପୁଣି ଶଚୀମାତା ।୧।
ନ ଜାଣନ୍ତି ବିଷ୍ଣୁପ୍ରିୟା ଏସନ ଚରିତ ।
ଗୃହଗୃଢ଼ ଗ୍ଭଲିଯିବେ ବୋଲି ପ୍ରାଣକାନ୍ତ । ୨ ।
ମୁକୁନ୍ଦ କହନ୍ତି ମାତ୍ର କେତେଜଣ ଆଗେ ।
ପ୍ରକାଶ ନକରେ କେହି ଗୋରା ଅନୁରାଗେ । ୩ ।
କେହି ବା ମଣନ୍ତି ମିଛ କେ ମଣନ୍ତି ସତ ।
ନବ ଦ୍ୱୀପ ଚନ୍ଦ୍ର ଗୌର ସଭିଙ୍କର ଚିତ୍ତ । ୪ ।
କେମନ୍ତେ ମୁ ଛାଡ଼ି ଯିବେ ସୁନାର ନିମାଇଁ ।
ଥୋକେ ନର ନାରୀଙ୍କର ମନକୁ ନ ଆସଇ । ୫ ।
ଜ୍ଞାନ ତାନ ଗୋପନେ ହୁଅନ୍ତି କୁହାକୁହି ।
ଶଚୀ ମାତା ବିଷ୍ଣୁପ୍ରିୟା ନ ଜାଣିବା ପାଇଁ । ୬ ।
ବଇଷ୍ଣବ ଦାସ ବୋଲେ ନେନେ ଉର ମାର ।
ଗୌରଚନ୍ଦ୍ର ବିନେ ହେବ ନଦୀୟା ଅନ୍ଧାର । ୭ ।

—:୦:—

( ରାଗ—ମଧୁଶ୍ରୀ, ତାଳ—ଆଠତାଳୀ )

ବ୍ୟାକୁଳ ଅନ୍ତରେ, ଥାଇ ଏକାନ୍ତରେ,
ବିଷ୍ଣୁପ୍ରିୟା ମହାସତୀ ।
ପ୍ରିୟ ସହଚରୀ, ପାଶେ କାନ୍ଦ କରି
ଗଦ୍‌ଗଦ ସ୍ୱରେ କହନ୍ତି ॥
ଶୁଣ ଆଗୋ ସହି ! ମରମ-ବେଦନା ଯା କହଇ । ୧ ।
ଆଜ କାହିଁପାଇଁ ନଦୀୟା ନଗର
ଶୂନ୍ୟମୟ ଦିଶେ ମୋତେ ।

ସର୍ବାଙ୍ଗ ଥରୁଛି, ଆହାର ଅରୁଚି;
ସୁଖ ନାହିଁ ମୋର ଚିତ୍ତେ ।
ବେନି ନେତ୍ର ମୋର । ଅକସ୍ମାତେ ବହେ ଲୁହଧାର ।୨।
ଡେଇଁଛି କାହିଁକି, ମୋ ଦକ୍ଷିଣ ଆଖି;
ଦକ୍ଷିଣ ଅଙ୍ଗ ସକଳ ॥
କର୍ଣ୍ଣର ଭୂଷଣ, ଖସେ କି କାରଣ;
ନାସିକାର ମୋତି ଫଳ ।
ଏକି ମନ୍ଦ ଦଶା । ବିଷପରି ଲାଗେ ବେଶଭୂଷା ।୩।
ଘର ବନ ପରି, ଦିବସ ଶର୍ବରୀ;
ଦିଶୁଛି ଥୋକାଏ ଦିନୁ ।
ପ୍ରାଣନାଥଙ୍କର, ଅନ୍ୟ ମନ କଥା;
ଜାଣୁଛି ମୁଁ ଅନୁମାନୁ ॥
ବିଷ୍ଣୁପ୍ରିୟା ବାଣୀ । ଦୁଃଖୀ ବୈଷ୍ଣବ ଦାସ ଭଣି । ୪ ।

( ରାଗ—ମଙ୍ଗଳ, ତାଳ—ଏକତାଳୀ )

ଆଜ ଏକ ବିପରୀତ ଦେଖିଲି ଗୋ ସହି ।
ଗଙ୍ଗାର ସଲିଳ ଧାର ସ୍ଥଗିତ କିମ୍ପାଇଁ ॥
ତରୁଲତା ଝାଉଁଳିଛି ଗୋ ନ ଫୁଟଇ ଫୁଲ ।
ଭ୍ରମର ଗୁଞ୍ଜନ ଶୂନ୍ୟ ମଉନ କୋକିଳ ॥
ଧେନୁ ତୃଣ ନ ଚରନ୍ତି ସୁରଧୁନୀ କୂଳେ ।
ହମ୍ବାରବ ନକରନ୍ତି ଅତ୍ୟନ୍ତ ଆକୁଳେ ॥
ଦକ୍ଷିଣ ପାଶେ ଭୁଜଙ୍ଗ ଫଣା ଟେକି ଗଲା ।
ପ୍ରଭାତରୁ ଭୁଙ୍କାକୁମ୍ଭ ଏ ନେତ୍ର ଦେଖିଲା ।
ଜାଣୁଅଛି ଏଥୁ କିଛି ପଡ଼ିବ ବିପତ୍ତି ।
ବୈଷ୍ଣବ ଦାସ ବୋଲେ ଧୈର୍ଯ୍ୟଧର ସତି ॥

—୧୦୪—

( ରା—ଖାର୍ଚ୍ଚ ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ଓଦା ବସନରେ, ଗଙ୍ଗା ସ୍ନାନ ସାରି
ଶ୍ରୀ ଗୌରଚନ୍ଦ୍ର ଘରଣୀ ।
ସଦନେ ପ୍ରବେଶି, ଶାଶୁଙ୍କ ଆଗରେ,
କାନ୍ଦି କହନ୍ତି ଏ ବାଣୀ ॥
ଜନନୀ ଗୋ ! ମୋ'ର କରମ ହୀନ ।
ଧିକ ଧିକ ଏ ମୋ ଦେହ ଜୀବନ । ୧ ।

କହିଁ କହିଁ ହୋଇ, ପାଗଳୀ ପରାୟୀ
କହନ୍ତେ ଶ୍ରୀ ବିଷ୍ଣୁପ୍ରିୟା ।
କୋଳକରି ତାହାଁ, ଶଚୀ ମାତ କହି
ଆକୁଳେ ପିଟାଇ ହିୟା ॥
କି ଗୋ ତୁ କନ୍ଦାଇଁ ହେଉ ଏପରି
ମୋର ବଧୂ ବିଷ୍ଣୁପ୍ରିୟା ସୂଦଶା । ୨ ।

ବିଷ୍ଣୁପ୍ରିୟା ଭଣି ହେ ଦେବୀ ଜନନୀ
କି କହିବି ମୋର ଦୁଃଖ ।
ଚୌଦିଗେ କେବଳ ଦେଖେ ଅମଙ୍ଗଳ
ତେଣୁ ଫାଟେ ମୋର ବକ୍ଷ ॥
ସ୍ନାନ କରୁଥିଲି ଗଙ୍ଗାର ଜଳେ
ଏକ ଅମଙ୍ଗଳ ଚିହ୍ନ ସେ ସ୍ଥଳେ । ୩ ।

ନାସାର ବେଶରେ କାହିଁକି ଗୋ ମୋର
ଖସି ପଡ଼ିଲା ସେ ନୀରେ ।
ଦକ୍ଷିଣ ନୟନ ନାଚେ ଘନ ଘନ
ହୃଦୟ ଗୋଟା ମୋ ଥରେ ॥

ଦକ୍ଷିଣ ଭୁଜଙ୍ଗ ତା ଫଣା ଟେକ
ପିବାର ଆଜ ଦେଖିଲ କାହିଁକ ? । ୪ ।
ପ୍ରବୋଧି ଜନନୀ କହନ୍ତ ଏ ବାଣୀ
ଆଗୋ ସଖୀ ବସ୍ତୁ ପ୍ରିୟ ॥
ନ ହୁଅ ଅଧିର ମୁଞ୍ଚ ଅଶ୍ରୁ ଧାର
ଏ ସବୁ ହରିଙ୍କ ମାୟା ।
କାନ୍ଦି କହେ ଦୁଃଖୀ ବୈଷ୍ଣବ ଦାସ
ନବଦ୍ୱୀପ ଛାଡ଼ି ଯିବେ ଗୀବେଶ । ୫ ।

—ঃ—ঃ—

( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳି )

ନଦୀୟା ନଗରେ ଯେତେ ନାରୀ ନରେ
ଶୁଣିକି ମୁକୁନ୍ଦ କହୁ
ସନ୍ନ୍ୟାସ ବସ୍ତ୍ରରେ ନ କହିବେ ଘରେ
ଶଚୀ ନନ୍ଦନ ନମାଇଁ ହେ । ୧ ।
ନେତ୍ରେ ଦେଖୁଥାଇ ମୁଖୁଁ ଶୁଣୁଥାଇ
ଯେ ଅମୃତ କଥା ବାଣୀ ।
ଏଣିକ ତା ସର୍ବ ସ୍ୱପନ ହୋଇବ
ସର୍ବ ଜନେ ଥାଅ ଜାଣି ହେ । ୨ ।
ନିଜ ଗୃହ ବାସ, ଯେତେ ଦାସୀ ଦାସ
ସମସ୍ତଙ୍କୁ ଦୂର କରି ।
ସନ୍ନ୍ୟାସୀ ହୋଇବେ ଗୌରଚନ୍ଦ୍ର ଏବେ
ସକଳ ସୁଖ ପାସୋରି ହେ ! ୩ !

ଆପଣା ଜନନୀ ଶଚୀ ଠାକୁରାଣୀ
ପତ୍ନୀ ବିଷ୍ଣୁପ୍ରିୟା ସତୀ
ଏହାଙ୍କୁ ତେଜିବେ ଗୌରାଙ୍ଗ କି ଭାବେ
ବୈଷ୍ଣବ ଦାସ ବଦନ୍ତି ହେ । ୪ ।

—※—

( ରାଗ—ମଙ୍ଗଳ କେଦାର, ତାଳ—ଏକତାଳୀ )

ମୁକୁନ୍ଦଙ୍କ ମୁଖୁଁ ଏହି ହୃଦଦହଣା ବାଣୀ ।
ଶୁଣି ନବଦ୍ୱୀପ ବାସୀ କରନ୍ତି ଝୁରେଣି ହେ । ୧ ।
ସବୁରି ମନର ବ୍ୟଥା ବେଳୁଁ ବେଳ ବେଶି ।
ଆହା କାହିଁ ଗୁଡ଼ିପିବେ ନବଦ୍ୱୀପ ଶଶୀ ହେ । ୨ ।
କି ଉପାୟେ ଗୌରହରି ରହିବେଟି ଘରେ ।
କାହାକୁ ନ ଦିଶେ ବୁଦ୍ଧି କୌଣସି ପ୍ରକାରେ ହେ । ୩ ।
ଏହାଚିନ୍ତା ସଭିଙ୍କର ହେଲା ଗୁରୁତର ।
କି କହିବେ ବୋଲି ମୁଖୁଁ ନ ଆସେ ଉତ୍ତର ହେ । ୪ ।
ମୁକୁନ୍ଦଙ୍କ ବାକ୍ୟ ହେଲା ବଜ୍ରର ସମାନ ।
ବ୍ୟାକୁଳ ନଦୀୟାବାସୀ ନେତ୍ରୁ ବହେ ବନ ହେ । ୫ ।
ଗଛ କାନ୍ଦେ ପତ୍ର କାନ୍ଦେ କାନ୍ଦଇ ଧରଣୀ ।
କାହିଁ ଗୁଡ଼ିପିବେ ଆହା ଗୌର ଗୁଣମଣି ହେ । ୬ ।
କେ ବା ଶିଖାଇଲା ତାଙ୍କୁ ସନ୍ନ୍ୟାସ ମନ୍ତ୍ରର ।
ସମସ୍ତଙ୍କୁ ଗୌରହରି କରିବେ ଅନ୍ତର ହେ । ୭ ।
ଭାଳନ୍ତି ନଦୀୟା ଜନେ ଦୁଃଖୀତ ମାନସେ ।
ଦୁଃଖୀ ବଇଷ୍ଣବ ଦାସ ଚିନ୍ତା-ନୀରେ ଭାସେ ହେ । ୮ ।

—୦—

( ରଥା—ରାଗ, ତାଳ—ତ୍ରିପୁଟା )

ଏମନ୍ତ ସମୟେ ତଥି, ପ୍ରବେଶ ହୋଇ ଝଟତି,
ମହାପ୍ରଭୁ ଗୌରାଙ୍ଗ ସୁନ୍ଦର ।
ଶ୍ରୀବାସଙ୍କ କର ଧରି, କହନ୍ତି ବିନତି କରି,
ଶୁଣ ଶୁଣ ଭକ୍ତ-ଦ୍ୱିଜବର ହେ । ୧ ।
ଏକ କଥା ତୁମ୍ଭ ପାଶ କହିବି ଆହେ ଶ୍ରୀବାସ
ନ କରିବ ମନରେ ବିଷାଦ ।
ପ୍ରେମ ଉପାର୍ଜ୍ଜନେ ମୁହିଁ, ଦେଶାନ୍ତର କରିବଇଁ
ମୋ ଲାଗି କେ ନ କରିବେ ଖେଦ ହେ । ୨ ।
ସେହି ମହା ପ୍ରେମ ଧନ ତୁମ୍ଭ ସଭିଙ୍କି ପ୍ରଦାନ
କରିବି ମୁଁ ଅନାୟାସେ ଜାଣ ।
ଯେପରି ସାଧବ ଜନ ଧନ କରି ଅରଜନ
ପୋଷେ ନିଜ ପ୍ରିୟ ବନ୍ଧୁଗଣ ହେ । ୩ ।
ସେହି ପ୍ରାୟ ପ୍ରେମ-ବିତ୍ତ ସକଳେ ଲଭିବ ସତ୍ୟ
ଏଥିରେ ସନ୍ଦେହ ନାହିଁ ଲେଶ ।
ଶ୍ରୀ ଗୌରଚନ୍ଦ୍ରଙ୍କ ବାଣୀ ମର୍ମ୍ମ କରୁଣ କାହାଣୀ
ଭଣେ ଦୁଃଖୀ ବଇଷ୍ଣବ ଦାସ ହେ । ୪ ।

———

( ରାଗ—କଳସା, ତାଳ—ଏକତାଳୀ )

ମହାପ୍ରଭୁଙ୍କ ଶ୍ରୀମୁଖଁ ଏ ବଚନ ଶୁଣି ।
କରୁଣ ସ୍ୱରେ ଶ୍ରୀବାସ ଭାଷନ୍ତି ତତ୍‌କ୍ଷଣି ହେ । ୧ ।
ଆହେ ନବଦ୍ୱୀପ ଶଶୀ କି କହ ଆପଣ ।
ତୁମ୍ଭ ଅଦର୍ଶନେ କେହ୍ନେ ରହିବ ଏ ପ୍ରାଣ ହେ । ୨ ।

ଯେତେ ତବ ଭକ୍ତ ଛନ୍ତି ନଦୀୟା ମଣ୍ଡଳେ ।
ଏ ଚନ୍ଦ୍ର ମୁଖ ନ ଦେଖି ମରିବେ ସକଳେ ହେ । ୩ ।
ତୁମ୍ଭେ ଧନ ତୁମ୍ଭେ ପ୍ରାଣ ତୁମ୍ଭେ ଏକା ଗତି ।
ତୁମ୍ଭେ ଆମ୍ଭମାନଙ୍କର ନୟନ-ସମ୍ପତ୍ତି ହେ । ୪ ।
ଦେଶାନ୍ତର କରିବାକୁ ନ ଦେବୁଁ ହେ ଗୁଡ଼ି ।
କେତେ ପୁଣ୍ୟ ଫଳେ ପାଇଅଛୁଁ ଲୋଡ଼ି ଲୋଡ଼ି ହେ । ୫ ।
ଯେଉଁ ପ୍ରେମ-ଧନ କରିଅଛ ବିତରଣ ।
ଆମ୍ଭ ପକ୍ଷେ ତା ବହୁତ ହୋଇଅଛି ପ୍ରମାଣ ହେ । ୬ ।
ତବ ବିରହରେ ନ ପାରିବୁଁ ପ୍ରାଣ ଧରି ।
ବଇଷ୍ଣବ ଦାସ ବୋଲେ ନ କହ ଏପରି ହେ । ୭ ।

—*—

( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ମୁକୁନ୍ଦ କହନ୍ତି ଦୁଃଖ ମନେ ଚିନ୍ତି
ନୟନୁ ଝରାଇ ନୀର ।
ଆହେ ଦୟାମୟ ଯା ହୁଏ ହୃଦୟ
କି କହିବି ମୁହିଁ ଗୁରି ହେ । ୧ ।
ପ୍ରାଣ ମାତ୍ର ଅଛି ଚଳି ନ ପାଉଛି
ହେଉଅଛି କଲବଲ ।
ତୁମ୍ଭର ସନ୍ନ୍ୟାସ ଶ୍ରବଣେ ମାନସ
ଲାଗୁ ନାହିଁ ହାଦେ ଭଲ ହେ । ୨ ।
ନଦୀୟା-ସୁନ୍ଦର ଚଳେ ଦେଶାନ୍ତର
କି କାର୍ଯ୍ୟ ଆଉ ଜୀବନେ ?
ଏପରି ନିଷ୍ଠୁର କଥା ଆମ୍ଭ ଠାରି
କହନ୍ତୁ କିମ୍ପା ଆପଣେ ହେ । ୩ ।

ତୁମ୍ଭ ମୁଖ ଚନ୍ଦ୍ର ନ ଦେଖି ତିଳାର୍ଦ୍ଧ
ହେଉଁ ଯେ ମୃତ୍ୟୁ ସମାନ ।
କାହା ବୋଲେ ଦେବ ! ସନ୍ନ୍ୟାସୀ ହୋଇବ
ଏ କି ବିଧି ବିଡ଼ମ୍ବନ ହେ । ୪ ।
ହୋଇ କାନ୍ଦି କାନ୍ଦି ଏପରି ମୁକୁନ୍ଦ
କହନ୍ତି ଗୌରଙ୍କୁ ଚାହିଁ ।
ଭଣେ ହୀନ ଦୀନ ବୈଷ୍ଣବ ଚରଣ
ଗୋରା ବନେ ଗଲେ କାହିଁ ହେ । ୫ ।

—x—

( ରାଗ—ଘର୍ଘ ମଧୁଶ୍ରୀ, ତାଳ—ଝୀପୁଟା )

ନେତ୍ରୁ ଢାଳି ବାରି, କହନ୍ତି ମୁରାରି,
ଶ୍ରୀ ଚୈତନ୍ୟ ଚନ୍ଦ୍ର ପାଶେ ।
ସଂଶୟ ଫିଟାଇ, କହ ଦୟାବନ୍ଧୁ,
ଛାଡ଼ି ଯିବ କେଉଁ ଦୋଷେ ହେ ॥
ଆହେ ଗୌର ଗୁଣମଣି !
ପ୍ରେମମୟ ମୂର୍ତ୍ତି ପ୍ରେମଦାମୀ ହେ । ୧ ।
ତୁମ୍ଭ ଅନୁଗତ, ଯେତେକ ଭକତ,
କପଟେ ଧରିବେ ପ୍ରାଣ ହେ ।
ନିଜ ହସ୍ତେ ରୋପି, ତରୁକୁ ବଢ଼ାଇ,
ଏବେ କରୁଛ ଛେଦନ ହେ ।
ଭଲ କି ଉଚିତ !
ଦିବ୍ୟ ଚକ୍ଷେ ବିଚାର କରତ ହେ । ୨ ।

ଭବ ଫଳ ଫୁଲେ ସୁଶୋଭନ ଡାଳେ

କେମ୍ନେ କାଟିବ ଏ ତରୁ ହେ ।

ନୁହଇ ପସନ୍ଦ ନବଦ୍ୱୀପ ଚନ୍ଦ

ଗୌର ବାଞ୍ଛା କଳ୍ପତରୁ ହେ ।

ଶୁଣି ଶ୍ରୀମୁଖ ବଚନ ।

ହୃଦ ହେଉଅଛି ଛିନ୍ନ ଭିନ୍ନ ହେ । ୩ ।

କିବା ନିଶି ଦିନ, ତୁମ୍ଭ ବିନୁ ଆନ,

ନ ଜାଣୁଁ ନଦୀୟାବାସୀ ହେ ।

ତୁମ୍ଭ ବିରହରେ, କେଉଁ ପରକାରେ ?

ବଞ୍ଚିବୁଟି ଗୌର ଶଶୀ ହେ ।

ନିତ୍ୟ ଶୟନ ସ୍ୱପନେ ।

ତୁମ୍ଭ ମୂର୍ତ୍ତି ଦେଖୁ ଆମ୍ଭେମାନେ ହେ । ୪ ।

ସଂସାର ବାସନା, ନ ଲାଗଇ ପ୍ରଭୁ

ତବ ଶ୍ରୀ ପଦ ପ୍ରସାଦୁଁ ହେ ।

ତୁମ୍ଭେ ଛାଡ଼ିଗଲେ, ରହିବୁଁ କି ଭଲେ,

ଦିନ ଯିବ କାନ୍ଦି କାନ୍ଦି ହେ ।

ପ୍ରଭୁ ! ନୁହ ନିଦାରୁଣ ।

ଆଦ୍ଧ କହେ ବୈଷ୍ଣବ ଚରଣ ହେ । ୫ ।

( ରାଗ—ମଙ୍ଗଳ ଗୁର୍ଜ୍ଜରୀ, ତାଳ—ଏକତାଳୀ )

ଏହି ପ୍ରାୟ ଭାସି ସର୍ବେ ଲୋତକ ସଲିଳେ ।

ଏକାବେଳେ ପଡ଼ିଲେ ଶ୍ରୀ ପାଦ-ପଦ୍ମ ତଳେ ହେ । ୧ ।

କାନ୍ଦନ୍ତି ଗଦ୍‌ଗଦ ସ୍ୱରେ ହୃଦୟ ଫଟାଇ ।

ନ ଯା ଦେଶାନ୍ତର ଦୟାମୟ ବୋଲି କହି ହେ । ୨ ।

କେଉଁ ଭକ୍ତ ଶ୍ରୀଚରଣ ଯୁଗଳକୁ ଧରି ।
ନିଷେଧନ୍ତି ବାରମ୍ବାର ବନସ୍ଥ ଆଚରି ହେ । ୩ ।
ଦେଖୁଁ ଦେଖୁଁ ଶୋକସିନ୍ଧୁ ଲହରୀ ବଢ଼ିଲା ।
କେଉଁ ଭକ୍ତ କାନ୍ଦି କାନ୍ଦି ଅଚେତନ ହେଲେ ହେ । ୪ ।
ସଭିଙ୍କି ପ୍ରବୋଧି ପ୍ରଭୁ ନଦୀୟା ବାହାରି ।
କହନ୍ତି ମଧୁର କଣ୍ଠେ କୋଳାଗ୍ରତ କରି ହେ । ୫ ।
ସେ ଗୌର ଚରଣ ଧୂଳି ଲଭିବା ମନସେ ।
ଦୀନ ଅକିଞ୍ଚନ ବଇଷ୍ଣବ ଦାସ ଭାଷେ ହେ । ୬ ।



( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳି )

ଭକ୍ତଗଣେ ଚାହିଁ, କହନ୍ତି ନିମାଇଁ,
ଆହେ ପାରିଷଦ ବର୍ଗ ।
ତୁମ୍ଭେମାନେ ମୋର, ଆତ୍ମୀୟ ନିକଟ
ତୁମ୍ଭେ ମୋର ଅନୁରାଗ ହେ । ୨ ।
ଅତ୍ୟନ୍ତ ସନ୍ନ୍ୟାସୀ, ହେ ନଦୀୟା ବାସୀ,
ମନରେ ନକର ଖେଦ ।
ମରମର କଥା, ପ୍ରକାଶିବ ଯଥା,
ଶୁଣ ହୋଇ ଜଣବଦ ହେ । ୨ ।
କହୁଁ କହୁଁ ଗୋରା, ନେତ୍ରେ ଅଶ୍ରୁଧାରା,
କଣ୍ଠ ସ୍ୱର ଅଧା ଅଧା ।
ସମ୍ଭାଳି ନୁହଇ, କରୁଣ ଭାବହିଁ,
ହୃଦେ ଲଭେ ମହା ବାଧା ହେ । ୩ ।
ବୋଲନ୍ତି ହେ ଭକ୍ତେ, ମୋର ଅନ୍ତର୍ଗତେ,
ଘାରଇ କୃଷ୍ଣ ବିରହ !

କାହା ସଙ୍ଗ କରୁଛୁ, ସୁଖ ନ ଲାଗୁଛୁ,
ମୋତେ ଜାଣ ଅନ୍ତରଦାହ ହେ । ୪ ।
ଅନଳ ସମାନ, ଜନନୀ ବଚନ,
ବିଷ ପ୍ରାୟ ଭୂମ୍ଭ ସାଥି ।
କୃଷ୍ଣ ବିନେ ମୋତେ, ନରୁଚେ କାଞ୍ଚନେ
ଯେ କରୁ ଆହାର ପଥିହେ । ୫ ।
ଜଳ ବିନେ ମୀନ ହୁଅଇ ଯେସନ,
ଘନ ବିହୀନେ ଚାତକ ।
ପତି ବିନେ ନାରୀ, ଦଶା ଟି ଯେପରି,
ମୋର ମନ ସେ ପ୍ରାୟକେ ହେ । ୬ ।
ଧନ ହୀନେ ଜୀବ, ଯେପ୍ରେ ବୃଦ୍ଧାରମ୍ଭ,
କରୁ ନାହିଁ ତହିଁ କାର୍ଯ୍ୟ ।
ବିଦ୍ୟା ହୀନ ନର, ବସେ ଯେ ପ୍ରକାର,
ପଣ୍ଡିତଙ୍କର ସମାଜ ହେ । ୭ ।
ଶ୍ରୀକୃଷ୍ଣ ବିହୀନ, ଧିକ ଏ ଜୀବନ,
ତିଳେ ନାହିଁ ମନେ ସୁଖ ।
ଏ ସଂସାର ଲୀଳା ଅଟେ ମିଥ୍ୟା ଖେଳା;
କେବଳ ପରମ ଦୁଃଖ ହେ । ୮ ।
ଏଣୁକର ମୁହିଁ, ସନ୍ନ୍ୟାସୀ ହୋଇବଇଁ
ଭ୍ରମି ଭ୍ରମି ଦେଶ ଦେଶ ।
ବନ୍ଧୁଙ୍କୁ ଭେଟିବି, ଆନନ୍ଦ ଲଭିବି,
ମନେ ଏହି ଅଭିଳାଷ ହେ । ୯ ।
ଏତେ ବୋଲି ଗୌର, ନେତ୍ରୁ ଢାଳି ନୀର,
ଲୋଟନ୍ତି ଅବନୀ ପରେ

କତୁକ୍ଷଣ ପରେ ଉଠିଣ ସତ୍ୱରେ
କହନ୍ତି ହା କୃଷ୍ଣ ହରେ ହେ । ୧୦ ।
ଶ୍ରୀଅଙ୍ଗରେ ଧୂଳୀ, ହୋଇଛନ୍ତି ବୋଳ,
ମହା ଭାବ ଉଦୋଦୟ୍ୟା
ନୟନୁ ଗଳିତା, ବାହାର କରି ତା
ଛୁଣ୍ଡାଇ ଫିଙ୍ଗିଲେ କଆଁ ହେ । ୧୧ ।
ଅତି ଆର୍ତ୍ତନାଦେ, କୃଷ୍ଣ ବୋଲି କାନ୍ଦେ
ନବଦ୍ୱୀପ ସୁଧାନିଧି ।
ତହୁଁ ବେଳୁଁ ବେଳ ବଢ଼ିଲା ପ୍ରବଳ,
ଶ୍ରୀକୃଷ୍ଣ ବିରହ ବ୍ୟାଧି ହେ । ୧୨ ।
ଦେଖି ସେହି ଭାବ, କା ଦେହ ସମ୍ଭବ,
ଯା ହୁଅନ୍ତି ଗୌରମଣି ।
ଅତି ପାନ ହୀନ, ପାତକୀ ଅଜ୍ଞାନ
ବଇଷ୍ଣବ ଦାସ ଭଣି ହେ । ୧୩ ।

———

( ରାଗ—କଳସା ତାଳ—ଏକତାଳୀ )

ପୁଣି କହନ୍ତି ଗୌରାଙ୍ଗ ଭକ୍ତଗଣେ ଗୃହିଁ ।
ଦାରୁଣ ସଂସାର ସ୍ରୋତ ବିଷମ ଅଟଇ ହେ । ୧ ।
ବିଷମୟ-ବିଷୟ ଅନଳୁଁ ବଳି ଜାଳେ ।
ଅନ୍ତର ଶୀତଳ ନୁହେଁ କଉଣସି କାଳେ । ୨ ।
ସଂସାର ଯାତନା ଅଗ୍ନି ପୋଡ଼ଇ ମରମେ ।
ବାଧା ଦିଏ ଶ୍ରୀକୃଷ୍ଣ ଭଜନ ପ୍ରତି ଯାମେ ହେ । ୩ ।
ଏଣୁ ଭାବିଅଛି ମୁହିଁ କରିବି ସନ୍ନ୍ୟାସ ।
ପରମ ହିତ ହୋଇବ ତୁମର ଅବଶ୍ୟ ହେ । ୪ ।

ତୁମ୍ଭେମାନେ ସବୁ ମୋର ସୁପ୍ରିୟ ବାନ୍ଧବ ।
ପୁଣି ଶୁଦ୍ଧମତ୍ତ ଅଟ ପରମ ବୈଷ୍ଣବ ହେ । ୫ ।
ମୋଠାରେ ନିର୍ଦ୍ଦୟ ଭାବ ନ କର ପ୍ରକାଶ ।
ସକଳେ ସମ୍ମତି ଦିଅ ହୋଇଣ ହରଷ ହେ । ୬ ।
ଏତେ କହି ଗୌରଚନ୍ଦ୍ର ଲୋଟନ୍ତି ଅବନୀ ।
ଧୂସରିତ ହେମଅଙ୍ଗ ନେତ୍ରୁ ଝରେ ପାଣି ହେ । ୭ ।
ଶ୍ରୀମୁଖ ପ୍ରସନ୍ନ ତହିଁ ମନ୍ଦ ମନ୍ଦ ହାସ ।
ପଦ୍ମ-ପାଦ ତଳେ ଦୁଃଖୀ ବଇଷ୍ଣବ ଦାସ ହେ । ୮ ।

—+—

( ରାଗ—ବଙ୍ଗଳା ଶ୍ରୀ, ତାଳ—ଆଠତାଳୀ )

ସଙ୍କୀର୍ତ୍ତି ସ୍ୱରେ, ଅବନୀ ଉପରେ,
ଗଡ଼ନ୍ତି ଗଉର ମଣି ।
ମୁକୁଳିତ କେଶ, ଧୂଳି ଜରଜର,
ମୁଖେ ହରି ହରି ଭଣି ହେ । ୧ ।
ଶ୍ରୀଅଙ୍ଗେ ପୁଲକ, ସଘନେ ନିଶ୍ୱାସ,
ଛାଡ଼ନ୍ତି ବାରକୁ ବାର ।
ଆପଦ ମସ୍ତକ, କମ୍ପଇ ତାଙ୍କର,
ଗଦ ଗଦ ଅର୍ଦ୍ଧ'ଗିର ହେ । ୨ ।
କ୍ଷଣେ କାନ୍ଦି କାନ୍ଦି, କ୍ଷଣେ ଯେ ଆନନ୍ଦି,
କ୍ଷଣେ କ୍ଷଣେ ଚମକନ୍ତି ।
କୃଷ୍ଣ ବିରହରେ, ଭାବନ୍ତି କାତରେ,
ବର୍ଣ୍ଣ ବିପରୀତ ଗତି ହେ । ୩ ।
ମହା ପାଗଳର, ସମ ଦିଗମ୍ବର,
ହୁଅନ୍ତି ଝୁଲଇ ଶିର ।

ହୁଂକାର ଗର୍ଜ୍ଜନ, ପୁଣି କ୍ଷଣ କ୍ଷଣ,
ନେତ୍ରୁ ବହିଯାଏ ନୀର ହେ । ୪ ।
ଦେଖି ସର୍ବ ଜନ ଚିନ୍ତାରେ ମଗନ,
ବଢ଼ିଲା ଦୁଃଖର ସିନ୍ଧୁ ।
ବଇଷ୍ଣବ ଦାସ, ବୋଲେ କର୍ଣ୍ଣେ ବାସ
ଛାଡ଼ିବେ ନଦୀୟା-ଇନ୍ଦୁ ହେ । ୫ ।



( ରାଗ—ଚକ୍ରକେଦାର, ତାଳ-ଝମ୍ପା )

ଶ୍ରୀ ଗୌରଚନ୍ଦ୍ରଙ୍କ ବଦନ ଚାହିଁ ।
କହନ୍ତି ମୁରାରି ବିନୟୀ ହୋଇ । ୧ ।
ହେ ପ୍ରଭୁ ସ୍ୱତନ୍ତ୍ର ତୁମ୍ଭେ ସର୍ବଥା ।
ନିଜ ଇଚ୍ଛା କେ କରିବ ଅନ୍ୟଥା । ୨ ।
ଲୋକ ମନ ବୁଝିବାକୁ ଏପରି ।
ଦୟା ଗୁଣ ଦେଖାଅ ଗୌରହରି । ୩ ।
ଅନ୍ତରେ ଗୋବିନ୍ଦ ବିରହ-ଦୁଃଖ ।
ଯା କରିବ କର ଯେ ତବ ସୁଖ । ୪ ।
ତୁମ୍ଭ କଥାରେ କେ ଦେବଟି ବାଧା ।
କେ ଭାଙ୍ଗି ପାରିବ ତୁମ୍ଭ ଶରଧା । ୫ ।
ତୁମ୍ଭେ ସର୍ବ ଜାଣ ସର୍ବାନ୍ତର୍ଯ୍ୟାମୀ ।
କୋଟି ବ୍ରହ୍ମାଣ୍ଡର ତୁମ୍ଭେ ତ ସ୍ୱାମୀ । ୬ ।
ଜଗତ ହିତେ ଭକ୍ତ ରୂପ ଧରି ।
ଶିବ ବ୍ରହ୍ମା ବନ୍ଦ୍ୟ ଶଚୀ କୁମରି । ୭ ।

ତୁମ୍ଭ ଆଜ୍ଞା ଲଙ୍ଘନେ କା ସାହସ।
ଭଣେ ଦୀନ ହୀନ ବୈଷ୍ଣବ ଦାସ । ୮ ।

—+—

( ଯଥା– ରାଗ; ତାଳ—ତିପୁଟା )

ମୁରାରିଙ୍କ ଏହି ବାଣୀ, ଶୁଣି ଗୌର ଦ୍ୱିଜମଣି,
ମନ୍ଦେ ହସି କଲେ ଆଲିଙ୍ଗନ।
ସମ୍ବୋଧନରେ ବିଶେଷ, କରିପ୍ରେମ ପରକାଶ,
କହିଲେ ସେ ପ୍ରବୋଧ ବଚନ ହେ । ୧ ।
ଶୁଣ ସବୁ ଭକ୍ତଗଣ, ଏବେ କରେ ନିବେଦନ,
ସନ୍ଦେହ ନ କର ମନେ କେହି ।
ମୁହିଁ ଯଥା ତଥା ଗଲେ, ତୁମ୍ଭ ପାଶେ ଅଛି ଭଲେ,
ଏହା ଜାଣ କହିଲି ଫିଟାଇ ହେ । ୨ ।
ଏମନ୍ତ ମଧୁର ବାଣୀ, ଭକ୍ତଙ୍କ ଆଗରେ ଭଣି,
ହର୍ଷ ଚିତ୍ତେ ବିଦାୟ ସେ ନେଲେ ।
ସନ୍ନ୍ୟାସ କରିବେ ବୋଲି, ମନେ ହେଉଛନ୍ତି ଭାଳି,
ମାତା ଏହା ନ ଜାଣନ୍ତି ଭଲେ ହେ । ୩ ।
ଶଚୀଙ୍କ ହୃଦୟ ସ୍ଥଳ, ହଠାତ୍ ହେଲା ଆକୁଳ,
ତେଣୁ କିଛି ନ ପାରିଲେ ଜାଣି ।
କହେ ବଇଷ୍ଣବ ଦାସ, ଛାଡ଼ି ସୁଦୀର୍ଘ ନିଶ୍ୱାସ
କେମନ୍ତେ ମୂର୍ଚ୍ଛିବେ ଠାକୁରାଣୀ ହେ । ୪ ।

——+——

( ରାଗ—ମଙ୍ଗଳ ଗୁର୍ଜ୍ଜରୀ, ତାଳ—ଏକତାଳୀ )

ଏହି ପ୍ରାୟ ମହାପ୍ରଭୁ ଶଚୀଙ୍କ ନନ୍ଦନ ।
ନଜର ସନ୍ନ୍ୟାସ କଥା କରଣ ଗୋପନ ହେ । ୧ ।
ଗର୍ଭଧାରୀ ଜନନୀ ସ୍ୱପତ୍ନୀ ବିଷ୍ଣୁପ୍ରିୟା ।
କେଉଁବେଳେ ହେଲେ ତାଙ୍କୁ ନ କହନ୍ତି ଏହା ହେ ॥
କେବଳ ଜାଣନ୍ତି ପାରିଷଦ ଭକ୍ତଗଣ ।
ସନ୍ନ୍ୟାସୀ ହୋଇବେ ବୋଲି ନଦୀୟା ମୋହନ ହେ ॥
ବେଞ୍ଚୁ ବେଳ ପ୍ରକଟ ହୋଇଲା ଏ କାହାଣୀ ।
ହାଟ ବାଟ ଘାଟ ଦାଣ୍ଡ ବଜାରରେ ପୁଣି ହେ । ୪ ।
ଏକକୁ ଆରେକ ଦେଖି ହୋନ୍ତି କୁହା କୁହି ।
ଶ୍ରୀ ଗୌରାଙ୍ଗଚନ୍ଦ୍ର ଆମ୍ଭ ଯିବେ ଯୋଗୀ ହୋଇ ହେ । ୫ ।
ନିଶ୍ଚୟ ଏଣିକି ପ୍ରଭୁ ନ ରହିବେ ଘରେ ।
ନବଦ୍ୱୀପ ଶୂନ୍ୟ କରି ଯିବେ ଦେଶାନ୍ତରେ ହେ । ୬ ।
କଥାବାର୍ତ୍ତା କରି ଲୋକେ ହୁଅନ୍ତି ବିକଳ ।
ଶୁଣି ବଇଷ୍ଣବ ଦାସ ନେତ୍ରୁ ଝରେ ଜଳ ହେ । ୭ ।

———

( ରାଗ—ବଙ୍ଗଳା ଶ୍ରୀ, ତାଳ—ଆଠତାଳୀ )

ସନ୍ନ୍ୟାସ ବାରତା, ଦେବୀ ଶଚୀମାତା,
ଶୁଣିଲେ ଲୋକଙ୍କ ମୁଖୁଁ ।
ଶିରେ ବଜ୍ରାଘାତ, ପରାୟେ ହଠାତ୍
ହୋଇଲେ ସେ ଦେଖୁ ଦେଖୁ ହେ । ୨ ।
କରଣ କନ୍ଦନ, ହାରିଲେ ଚେତନ,
ହା ହା ରେ ନମାଇଁ ବୋଲି ।

ଶିରେ ବାରମ୍ବାର, କଗୁଡ଼ନ୍ତି କର
ସଚେତନ ଅଶ୍ରୁ ଢ଼ଳ ହେ । ୨ ।
ବାଇଆଣୀ ପରି, ଯାହା ଯାହା ଫେରି,
ପଗ୍ଭରନ୍ତି ଯାରେ ତାରେ ।
ସତେ କ ମୋ ନିମା ମୋ ସୁଖ ଗାରମା
ଘଙ୍ଗିବ ବଗ୍ଭର କରେ ହେ । ୩ ।
ନବଦ୍ୱୀପ ବାସୀ, କହନ୍ତି ବଟଣ୍ଡି,
ଗୌରାଙ୍ଗ ସନ୍ନ୍ୟାସ କଥା ।
ଶୁଣି ବଇଷ୍ଣବ ଚରଣ ନିର୍ଜୀବ,
ପାଷାଣେ କୁଟଇ ମଥା ହେ । ୪ ।



( ରାଗ—କଳସା, ତାଳ—ଏକତାଳୀ )

ବ୍ୟାକୁଳ ଚିତ୍ତରେ ନେଇ ଥନ ଥନ କର ।
ଚଳିଗଲେ ଶଚୀମାତା ଯହିଁ ଗୌରହର ହେ । ୧
କରୁଣ ଗଦ୍‌ଗଦ ସ୍ୱରେ କହନ୍ତି ସଧୀରେ ।
ବାବୁରେ ନିମାଇଁ ସତ କହ ମୋ ଆଗରେ ରେ । ୨ ।
କ ଶୁଣୁଛି ଲୋକ ମୁଖୁଁ ହୃଦ ହଣା ବାଣୀ ।
ସନ୍ନ୍ୟାସୀ ହେବାକୁ ବଗ୍ଭରୁଛୁ ଧନମଣି ରେ । ୩ ।
ତୁ ମୋ ଏକଇର ବଳା ନୟନ ପିତୁଳ ।
ଜୀବନ ସର୍ବସ୍ୱ କଣ୍ଠ ଜମ୍ବୁନଦ ମାଳରେ । ୪ ।
ତୋତେ ନ ଦେଖିଲେ କ୍ଷଣେ ଚୌଦିଗ ଅନ୍ଧାର ।
ତୁହ ମୋ କୁଳ-ଚନ୍ଦ୍ରମା ସମ୍ପଦ-ଭଣ୍ଡାର ରେ । ୫ ।
ସାତ ପାଞ୍ଚ ନାହିଁ ମୋର କୋଳକୁ ନନ୍ଦନ ।
କାହିଁ ଛାଡ଼ିପିବୁ ଆହା ମୋ ରଙ୍କୁଣୀ ଧନରେ । ୬ ।

ଏ ବୁଦ୍ଧି କେ ଦେଲା ତୋତେ ବାପରେ ନମାଇଁ ।
କାହା ବୋଲେ ସନ୍ନ୍ୟାସୀ ହୋଇବୁ କାହିଁପାଇଁ ରେ ॥
ଶୁଣିଲା ବେଳରୁ ଘାଣ୍ଟି ହେଉଛି ମୋ ମନ ।
ମୋ ଶିରେ ନ ହୁଏ କମ୍ପା କୁଳଶ ପତନ ରେ ।
ତୋ ବଦନ ଗୃହିଁ ଗୃହିଁ ହରୁଥିଇ ଦୁଃଖ ।
ଅନାଥିନୀ ଜନନୀ କି ନକର ନିରେଖ ରେ । ୯ ।
କେତେ ତପ ବ୍ରତ କରି ପାଇଛି ମୁଁ ତୋତେ ।
ନବଦ୍ୱୀପେ ଭାଗ୍ୟବତୀ ବୋଲନ୍ତି ସମସ୍ତେ ରେ । ୧୦ ।
ତୁହି ଛାଡ଼ିଗଲେ କେହି ନ ପାଇବେ ସୁଖ ।
ଅଭାଗିନୀ ବୋଲି ମୋରେ ହୋଇବ ବିମୁଖରେ ।
କାନ୍ଦି କାନ୍ଦି କହେ ଦୁଃଖୀ ବୈଷ୍ଣବ ଦାସ ।
ତୋ ବିହନେ ନଷ୍ଟେ ମୁଁ ଗଙ୍ଗାରେ ଦେବି ଝାସରେ ।୧୨।

—+—

(ରାଗ—ବଙ୍ଗଳା ଶ୍ରୀ, ତାଳ—ଆଠତାଳୀ)

ମାତାଙ୍କୁ ପ୍ରବୋଧି, ଗୌର ସୁଧାନିଧି
କହନ୍ତି ଚରଣ ଧରି ତହିଁ ।
ଶୁଣ ଗୋ ଜନନୀ, ମୋ ଦାଇନ ବାଣୀ,
ଅନ୍ୟ କିଛି ନ ବିଚାର ଗୋ । ୧ ।
ଏ ମିଥ୍ୟା ସଂସାର, କେ ଅଛି କାହାର
ଏକା ଶ୍ରୀଗୋବିନ୍ଦ ବିନା ।
କୃଷ୍ଣ ହର୍ତ୍ତା କର୍ତ୍ତା, କୃଷ୍ଣ ପିତା ମାତା
ସବୁରି ଅଟନ୍ତି ପିନା ଗୋ । ୨ ।
କୃଷ୍ଣ ବନ୍ଧୁ ଜନ, କୃଷ୍ଣ ମାତ୍ର ଧନ,
କୃଷ୍ଣ ଏ ପିଣ୍ଡର ଗତି ।

ମାୟା ମୋହ ଭୁଲ, ମୋତେ ପୁତ୍ର ବୋଲ,
କହୁଛୁ କୃଷ୍ଣ ନ ଚନ୍ତ ଗୋ । ୩ ।
ଯେତେକ ସମୟ ମୋର କରୁ ସ୍ନେହ,
ତୁ ତାହା କୃଷ୍ଣେ ସମର୍ପ ।
ଏ କ୍ଷଣ ଭଙ୍ଗୁର, ମାଟି କଳେବର,
ମାଟିରେ ହୋଇବ ଲୋପ ଗୋ । ୪ ।
ଭଜ ନରବଧି, କୃଷ୍ଣ ଦୟାନିଧି,
ଛାଡ଼ ଏ ମାୟା ମମତା ।
ଗୌରଚନ୍ଦ୍ର ଗିରେ ଖସି ନେତ୍ର ନୀରେ
କହନ୍ତି ସେ ଶଚୀମାତା ହେ । ୫ ।
ଶୋକେ ଜରଜର, ହୃଦୟ ଅସ୍ଥିର,
ବାତ୍ସଲ୍ୟ ମୂର୍ଚ୍ଛିବେ କେହେ ।
ଝାଉଁମରା ହୋଇ ପୁତ୍ରେ ନବେଧନ୍ତ,
ବଇଷ୍ଣବ ଦାସ ଭଣେ ହେ । ୬ ।

—*—

( ରାଗ—କଳସା, ତାଳ—ଏକତାଳୀ )

କ ଜ୍ଞାନ ବୁଝାଉ ମୋରେ ଆହାରେ ନମାଇଁ ।
ସନ୍ନ୍ୟାସ କରିବ ବେଳ ତୋର ଏ ନୁହଇ ରେ । ୧ ।
ଏ ବୟସେ ନ ଯା ବାପ ଛାଡ଼ି ଘର ଦ୍ୱାର ।
ତୋ ବିହନେ କରିବ ମୁଁ ଛାଡ଼ିଣ ଆହାର ରେ । ୨ ।
ଆହା ଏ କୋମଳ ପାଦେ କେସନେ ଭ୍ରମିବୁ ।
କ୍ଷୁଧାରେ ତୃଷ୍ଣାରେ ଅନ୍ନ କାହାକୁ ମାଗିବୁ ରେ । ୩ ।
ଲବଣୀ ପୁତ୍ତଳୀ ମୋର ସୁକୁମାର ନମା ।
ତୁହି ଗଲେ ସରିଯିବ ମୋ ସୁଖ ଗାରିମା ରେ । ୪ ।

ତୋର ଅଦର୍ଶନେ ଚଉଦିଗ ହେବ ଶୂନ୍ୟ ।
ନଷ୍ଟ ଏଁ ଘଟିବ ମୋତେ ଜୀଅନ୍ତା ମରଣ ରେ । ୫ ।
ସନ୍ତାପ ସିନ୍ଧୁରେ ମୋତେ ନ ଯାଅ ଭସାଇ ।
ମୋ କହିବା କଥା ମନ ପ୍ରାଣର ନିମାଇଁ ରେ । ୬ ।

ବଗ୍ରରନ୍ତୁ ଏ ବୟସେ ସନ୍ନ୍ୟାସୀ ହେବାକୁ ।
ଦାରୁଣ ବଚନେ ମୋର ଥରଯାଏ ବୁକୁ ରେ । ୭ ।
ଖାପରେ ଡବାରେ ବୁଲି ବୁଲି ଦେଶାନ୍ତରେ ।
କେମନ୍ତେ ସହିବୁ କଷ୍ଟ ଏ ସୁନା ଅଙ୍ଗରେ । ୮ ।

ଏକାଇର ବଳା ତୁ ମୋ ନୟନ ସଙ୍ଗୀଳ ।
ଦୁଃଖିନୀ ଜୀବନ ଧନ ଗଳା ରତ୍ନମାଳ ରେ । ୯ ।
ମୁଁ ହତ ଭାଗିନୀ ସିନା ତୋହର ବାହାନେ ।
କଲବଲ ହୋଇ ମରିଯିବ ବୁଝ ମନେ ରେ । ୧୦ ।

ଗଙ୍ଗାରେ ଝାସିବ କିବା ଅନଳେ ପଶିବ ।
କହ ବାବୁ କି ପ୍ରକାରେ ଆଜ ମୁଁ ବଞ୍ଚିବି ରେ । ୧୧ ।
ଯେବେ ଗୃଲପିବୁ ଗୋରାଗୃହ ରେ ତୋ ବିନେ ।
ଝୁରି ଝୁରି ମୁଁ ଜହର ଭରିବ ବଦନ ରେ । ୧୨ ।

ବଧୂ ବନ୍ଧୁ ପ୍ରିୟା ମୋର ଆଜନମ ସୁଖୀ ।
କଣ୍ଟକ ନଗରୁ ଆସି କେଶବ ଭାରତୀ ।
ତୋ ବରଣେ ପିନ୍ଧାରେ ତା ପ୍ରାଣ ରଖିବକ ରେ । ୧୩ ।
କିବା ଶିକ୍ଷା ଦେଲେ ତୋରେ ମୋର ସୁନା ହୀରାରେ । ୧୪ ।

ନିମାଇଁଙ୍କୁ କୋଳକରି ଶୋକଭର ହୋଇ ।
ବ୍ୟଥିତେ କହନ୍ତି ଏତେ ମାତା ଶଚୀ ଆଇରେ । ୧୫ ।
ଶ୍ରବଣ ବରଷା ପରି ନେତ୍ରୁ ଝରେ ପାଣି ।
ଦେଖି ବୈଷ୍ଣବ ଦାସରୁ ହୃଦ ହୁଏ ଫାଟିରେ । ୧୬ ।

( ରାଗ—ଚକ୍ରକେଦାର, ତାଳ—ଝମ୍ପା )

ଶଚୀ ମାତାଙ୍କର ଚରଣ ଧରି ।
ପ୍ରବୋଧି କହନ୍ତି ଶ୍ରୀ ଗୌରହରି । ୧ ।
ନ କାନ୍ଦ ଜନନୀ ବ୍ୟାକୁଳ ମନେ ।
ମେଲଣି ଦିଅସି ହର୍ଷ ବଦନେ । ୨ ।
ସୁକଲ୍ୟାଣ କର ହେବ ସନ୍ନ୍ୟାସୀ ।
ନ ହୁଅ ବ୍ୟଥିତ । ଲୋତକେ ଭାସି । ୩ ।
ଦଇନ ଯେନ ମା ନକର ଚିନ୍ତା
ମୋର ଲାଗି ଆଉ ନୁହ ଦୁଃଖିତା । ୪ ।
କାନ୍ଦି କହେ ଦୁଃଖୀ ବୈଷ୍ଣବ ଦାସ ।
ଘଟାଉଛନ୍ତି ଗୋରା କି ସର୍ବନାଶ । ୫ ।

—:o:—

( ରାଗ—କଳସା, ତାଳ—ଯଦୁପଠ )

ନେତ୍ର ନୀରେ ବକ୍ଷ ତିନ୍ତାଇଣ ଶଚୀ ଆଈ ।
କହନ୍ତି କରୁଣ ସ୍ୱରେ କି କହୁ ନିମାଇଁ ରେ । ୧ ।
କି ବାଇ ବୁଦ୍ଧି ଧରିଲୁ ଅବା କାହା ବୋଲେ ।
ନଦୀୟା ଅନ୍ଧାର ହେବ ତୁମ୍ଭେ ଛାଡ଼ିଗଲେ ରେ । ୨ ।
ସଭିଙ୍କ ଠ'ରେ ତୋ ଦୟା ପର ଜୀବଧନ ।
ଏବେ ମୋର ନିର୍ଦ୍ଦୟ ହେଉଛୁ କି କାରଣରେ । ୩ ।
ଅତି ଅଳ୍ପ ବୟ ମୋର ସୁକୁମାର ଅସ୍ଥି ।
ବାହ୍ୱ କମ୍ପା ଏତେ ସହି ହାତେ କରାଉଛୁ ବେ । ୪ ।
ରୂପେ ଗୁଣେ ଧନରେ ତୁ ସଭାରୁ ସୁନ୍ଦର ।
ମଦନ-ମୋହନ ବେଶ କେଡ଼େ ଚମତ୍କାର ରେ । ୫ ।

କୁଞ୍ଚିତ କୁନ୍ତଳ କ ମାନଇ ତୋ ପିଠିକି ।
ତାହା କାଟି ପକାଇବୁ ଯାଇ କେଉଁଠିକି ରେ । ୬ ।
ସୁବାସ ତଇଳ ମାଖି ଥିଲି ତା କଡ଼ାଇ ।
ସେ କେଶ ଛେଦିବୁ ଧନ କାହା ହସ୍ତେ ଭୁହ ରେ ।୭।

ସୁଶୀଳ ସୁଶାନ୍ତ ମୋର ସୁବୋଧ ନିମାଇଁ ।
ଛାଡ଼ ଏ ବାଉଳା ବୁଦ୍ଧି ଛାଡ଼ ନ ଯା କାହିଁରେ । ୮ ।
ମାଳତୀ ବକୁଳ ଚମ୍ପା ଫୁଲ ଖଞ୍ଜି ଦେଇ ।
ଯେଉଁ ଚିକୁର ଗୁଚ୍ଛେ ତୋ ବେଣୀ ମୁଁ ବାନ୍ଧଇ ରେ ।୯।

ସେ ସବୁ ଲାବଣ୍ୟ କେଶ କରିବୁ କି ଶୂନ୍ୟ ।
ବିଦାରି ହେଉଛି ହୃଦ୍ୟ ଶୁଣି ଏ ବଚନ ରେ । ୧୦ ।
ମନୋହର ନଟବର ବେଶ କି ମାଧୁରୀ ।
ବଦଳାଇ ଦେବୁ ସତେ ଅଛୁ କି ବିଚାରି ରେ । ୧୧ ।

ଯେତେବେଳେ ସଂକୀର୍ତ୍ତନେ ନାଚୁ ଭଳି ଭଳି ।
ସେ ରଙ୍ଗ ଦେଖି ମୋ ଛାତି ଉଠୁଥାଇ ଫୁଲି ରେ ।୧୨।
ଯେତେବେଳେ ବଦ୍ୟାପୀଠେ ଯାଉ ପୋଥି ଘେନି ।
ସେ ଶୋଭା ଦେଖି ସଫଳ କରେ ନେତ୍ର ବେନିରେ ।୧୩।

ଯେତେବେଳେ ଗଙ୍ଗା ତୀରେ କରୁ ବେଦପାରଣ
ତା ଦେଖି ମୋ କୋଟି ଦୁଃଖ ହୁଅଇ ହରଣ ରେ ।୧୪।
କେଉଁ ଗୁଣ ବାଉଁରିବ ତୋର ଆରେ ଧନ ।
ସର୍ବ ଗୁଣେବନ୍ତ ମୋର ଗୌରାଙ୍ଗ ରତନ ରେ । ୧ ।

ମୋ ରାଣେଟି ତୋତେ ବାପ ନ ହୁଅ ସନ୍ନ୍ୟାସୀ ।
ଅକାଳେ ଲଗାନା ବାପ ମୋର ଗଳେ ଫାଶି ରେ ।୧୬।
ଶଚୀ ମାତା ଏହିପରି କାନ୍ଦନ୍ତି ଆକୁଳେ ।
ଯେସନ୍ତେ ଯଶୋମତୀ ଦଶା ଘଟିଲା ଗୋକୁଳେ ହେ ।୧୭।

ବାତ୍ସଲ୍ୟମୟୀ ମା ତାଙ୍କ ଶୋକେ କାନ୍ଦ କାନ୍ଦ ।
କହେ ବଇଷ୍ଣବ ଦାସ ଦୁଃଖେ ଧୈର୍ଯ୍ୟ ବାନ୍ଧ ହେ । ୮ ।
( ରାଗ—ବଙ୍ଗଳା ଶ୍ରୀ, ତାଳ—ଆଠତାଳୀ )

ଜନନୀଙ୍କ ଅସ୍ତ ବ୍ୟସ୍ତ ଭାବ ଦେଖି
କହନ୍ତି ଗୌରାଙ୍ଗ ଗୁଣୀ ।
ବଇରାଗ୍ୟ ଭାବ ହୃଦରେ ସମ୍ଭାଦ
ନୟନୁ ଅଶ୍ରୁ ବରଷି ହେ
ନ କାନ୍ଦ ମୋ ଲାଗି ନ କାନ୍ଦ ଜନନୀ ।
ବ୍ୟର୍ଥେ ଗୋ ଆକୁଳ ଭରେ ।
ବାରଣ ନ କର ତୋ ପାଣ ପକାଇ
ମୋର ସନ୍ନ୍ୟାସ ହେବାରେ ଗୋ ॥
ଏ ମାୟା ସଂସାରେ କେ ଅବା କାହାର ।
ସବୁ ଅଟେ ମିଥ୍ୟାମୟ ।
କେ କାହାର ମାତା କେ କାହାର ପିତା
କେବା କାହାର ତନୟ ଗୋ । ୩ ।
ପୂର୍ବ ଜ୍ଞାନେ ମୋତେ ଅତ୍ୟନ୍ତ ସ୍ନେହରେ
ପାଳିଛ ମମତା ଭରେ ।
ଭଲେ ହେତୁ କର ମୁଁ ନକ ତୁମ୍ଭର
ତନୟଟି ଯଥାର୍ଥରେ ଗୋ ।
ଆସିଛୁ ଏ ଜୀବ ଏକା ଚାଲିଯିବ
ଏକା ଯେ ଅଜଣା ଦେଶେ ।
ପରମ ପୁରୁଷ ଏକମାତ୍ର ସାଥି
ବୁଝ ଆପଣା ମାନସେ ଗୋ ॥
ସବୁ ଅକାରଣ ଶ୍ରୀକୃଷ୍ଣ ଚରଣ
କେବଳ ସଂସାରେ ସାର ।

କୃଷ୍ଣ ନାମ ବିନେ ଗତି ନାହିଁ ଅନ୍ୟ,
ଏ ସର୍ବ ଶାସ୍ତ୍ର ବିଗ୍ରହ ଗୋ । ୬ ।
କୃଷ୍ଣ ବିନା ମାତା ପିଣ୍ଡର କରତା,
କୃଷ୍ଣ ଏକା ପ୍ରାଣ ପତି ।
ଏ ମାୟା ମମତା ଛାଡ଼ ଆଗୋ ମାତା,
କୃଷ୍ଣ ପଦେ ଦିଅ ମତି ଗୋ । ୭ ।
ପୁତ୍ର ସ୍ନେହ କରି ଦିବସ ଶର୍ବରୀ
ମୋତେ ଯାହା ଭାବ ମନେ ।
ବୁଝ କିନା ମାତା କି ଲାଭ ନୁହନ୍ତା,
ଶ୍ରୀକୃଷ୍ଣ ନାମ ଭଜନେ ଗୋ । ୮ ।
ଭଜ କୃଷ୍ଣ ହରି ଅନାୟାସେ ତରି,
ଯିବ ଭବ-ସିନ୍ଧୁ ବାରି ।
ଯେ କୃଷ୍ଣ ବିରହେ ମୋ ଅନ୍ତର ଦହେ,
ସାହା ସେହି ବଂଶୀଧାରୀ ଗୋ । ୯ ।
ସନ୍ନ୍ୟାସ ନିମନ୍ତେ ଆଜ୍ଞା ଦିଅ ମୋତେ,
ଭ୍ରମି ନୁହ ମାୟା ମୋହେ ।
ମୋର ନିସ୍ତାରଣ ତୁମ୍ଭ ପରିତ୍ରାଣ,
ପଥ ଅନୁସର ମାୟେ ଗୋ । ୧୦ ।
ଜଗତ ହିତେ ମୁଁ ସନ୍ନ୍ୟାସୀ ହୋଇବି,
ଏଥିକି ନ କର କ୍ଷୋଭ ।
ଏ ମାୟା ମମତା ଦୂରକରି ମାତା,
କୃଷ୍ଣ ନାମେ କର ଲୋଭ ଗୋ । ୧୧ ।
ଚରଣେ ଜନନୀ ! ଏ ମୋର ବିନୟ,
ଶୁଭେ ଦିଅ ଅନୁମତି ।

ମାତୃ ଆଜ୍ଞା ବିନେ ଯିବଇଁ କେସନେ,
ଏଣୁ କରଇ ବିନତି ଗୋ । ୧୨ ।
ଶ୍ରୀ ନିମାଇଁ ଗୃହ ଧରି ଶଚୀ ପାଦ,
କରନ୍ତେହି ଅନୁନୟ ।
ନେତ୍ର ଥରେ ଥରେ କରୁଣ ବଚନେ,
ଜନନୀ ହୃଦୟ ଅସ୍ଥ ହେ । ୧୩ ।
କେମନ୍ତେ କହିବେ, ଯାଅ ବୋଲି ମାତା,
କପଟ ବଳିବ ସତ ?
ଭକ୍ତ ପାଦ ହୀନ ବୈଷ୍ଣବ ଚରଣ
ଗୌର ସନ୍ନ୍ୟାସ ଚରିତ ହେ । ୧୪ ।



( ରାଗ—ଘର୍ଘରଛନ୍ଦ, ତାଳ—ତ୍ରିପୁଟା )

ନିମାଇଁଙ୍କ ମୁଖରୁହିଁ, ଶୋକ ଗଦଗଦେ ତହିଁ,
ଶଚୀମାତା ହୋଇଣ ଅଧୀର ।
ମୁଖୁଁ ନ ସ୍ଫୁରଇ ବାଣୀ, ହୃଦୟ ହୁଅଇ ହାଣି,
ନେତ୍ରୁ ବହିଯାଏ ଅଶ୍ରୁଧାର ହେ । ୧ ।
ଭଳନ୍ତି ବିସ୍ମୟ ମନେ, ଅତି ବିରସ ବଦନେ,
ଧନକୁ ମୋ ମୁଣ୍ଡିବ କେମନ୍ତେ ।
ଜଗତ ମଙ୍ଗଳ ପାଇଁ, ସନ୍ନ୍ୟାସୀ ହେବ ନିମାଇଁ,
ନିଷେଧିବ ଅବା କେଉଁ ମତେ । ୨ ।
ଶ୍ରୀ ଗୌରଙ୍କ ମୁଖ ଶଶୀ, ଏକ ଦୃଷ୍ଟିରେ ନିରେଖି
ମାନସରୁ ମାୟାକଲେ ଦୂର ।

ସର୍ବ ଜୀବେ ଏକ ଭାବ, ମୌନ ହେଲେ ଶଚୀଦେବୀ
ବଦନରୁ ନଇଲ ଉତ୍ତର ହେ । ୩ ।

ସେହି କ୍ଷଣେ ସ୍ୱକୁମରେ, ମାତା କୃଷ୍ଣ ବୁଦ୍ଧି ଧରେ,
ନଦୀୟା ଚନ୍ଦଙ୍କ ମସ୍ତୁ କଲେ ।
ବିଚାରିଲେ ମନେ ମନେ, ପାଇଛି ମୁଁ ପୁତ୍ର ଜ୍ଞାନେ,
ଜଗତନାଥଙ୍କୁ ପୁଣ୍ୟ ଫଳେ ହେ । ୪ ।

ଏତେ ଚିନ୍ତି ଅନୁମାନ, ସୌଭାଗ୍ୟବତୀ ଜନନୀ,
ମୃଦୁ ସ୍ୱରେ ଭାଷିଲେ ବଚନ ।
ଆହାରେ ମୋର ନିମାଇଁ, ସ୍ୱତନ୍ତ୍ର ଈଶ୍ୱର ତୁହି,
ମାୟାମୟ ପୁରୁଷ ରତନ ରେ । ୫ ।

ମୋର ଭାଗ୍ୟେ ଯେତେଦିନ, ବଶ ହୋଇଥିଲୁ ଧନ,
ଏଣିକି ସେ ଆଶା ନାହିଁ ଆଉ ।
ସ୍ୱଇଚ୍ଛାରେ ତ ସନ୍ନ୍ୟାସ- ବ୍ରତେ ବଳାଇଛୁ ଆଶ,
ନିଷେଧି ପାରଇ ତୋତେ କାହୁଁରେ । ୬ ।

ଏତିକି ମୋ ମନେ ଦୁଃଖ, କାହିଁ ଲୁଚାଇବୁ ମୁଖ,
ଆରେ ବାପ ମୋର ସୁନା ଗୋରା ।
ଏ ଧନ ସମ୍ପଦେ ମୋର, ଆଉ କିବା ଦରକାର,
ତୁହି ବିନା ନୟନ ପସରା ରେ । ୭ ।

ସାତ ପାଞ୍ଚ ନାହିଁ ବୋଲି, ତୁ ମୋ ଜୀବନ ସଙ୍ଗାଳି,
ଏକଇର ବଳାରେ ନିମାଇଁ ।
ଆହା ମୋ କୁଳର ନିଧି, କହ କରିବ କି ବୁଦ୍ଧି,
ଦଶ ଦିଗ ଅନ୍ଧାର ଦିଶଇ ରେ । ୮ ।

ଏତେ ବୋଲି ଘନ ଘନ, ଶଚୀ କରନ୍ତି କ୍ରନ୍ଦନ,
ନେତ୍ରୁ ବହିଯାଏ ଅଶ୍ରୁ ଧାର ।

ଦେଖି ବିଷ୍ଣୁପ୍ରିୟା ନାଥ, ହେଠ କରି ନିଜ ମଥ,
ସହି ନ ପାରନ୍ତି ଶୋକଭାର ହେ । ୯ ।
ପ୍ରବୋଧି କହନ୍ତି ପୁଣି ଧରି ମାତା ପାଦ ବେନି,
ସକରୁଣ-ସ୍ୱରେ ଗୌର ହରି ।
ସେ ଗୌରାଙ୍ଗ ପଦଧରି, ନୋହି ଯୁଗେ ଅଶ୍ରୁ ଭରି,
ବଇଷ୍ଣବ ଦାସ ହୁଏ ଝୁରି ହେ । ୧୧ ।

—*—

( ରାଗ—ମଙ୍ଗଳ, ତାଳ—ଏକତାଳୀ )

ମାତାଙ୍କୁ ନାନା ପ୍ରକାରେ ପ୍ରବୋଧି ନିମାଇଁ ।
ବୋଲନ୍ତି ଶୋକ ସମ୍ଭାଳ ଶୁଣ ଯା କହଇ ଗୋ । ୧ ।
ମୋ ଲାଗି ନ କର ଶଙ୍କା ଘେନ ନିବେଦନ ।
ଯେ କାଳେ ଭାବିବ ମୋତେ ପାଇବ ଦର୍ଶନ ଗୋ । ୨ ।
ଯହିଁ ତହିଁ ଗଲେ ତୁମ୍ଭ ନିକଟେ ମୁଁ ଅଛି ।
ଜନନୀ ଗୋ ମନେ ଅନ୍ୟ ନ ବିଚାର କିଛି ଗୋ । ୩ ।
ତୁମ୍ଭେ ଯେହି ଯଶୋମତୀ ମୁଁ ସେହି କହ୍ନାଇ ।
ଏ ଯୁଗେ ମୁଁ ତୁମ ସୁତ ଗୌରାଙ୍ଗ ନିମାଇଁ ଗୋ । ୪ ।
ସେ ବେଳ ମଥୁରା ଯାତ୍ରା ଏ ବେଳ ସନ୍ନ୍ୟାସ ।
କେତେ କାନ୍ଦିଛ ମୋ ଲାଗି ଆକୁଳେ ଅବଶ୍ୟ ଗୋ । ୫ ।
ଦାରୁଣ ସନ୍ତାପେ ଆଜ ଘାରି ନୁହ ମାତ ।
ବିଦାୟ ଦିଅ କୁଶଳେ ଘେନ ପ୍ରଣିପାତ ଗୋ । ୬ ।
ହୃଦୟ ମଧ୍ୟରେ ମାତ ଦେଖୁଥାଅ ମୋତେ ।
ଶୁଭେ ଅନୁମତି ଦିଅ ସନ୍ନ୍ୟାସ ନିମନ୍ତେ ଗୋ । ୭ ।
ଏହି ମତେ ଗୌରହରି କହନ୍ତି ପ୍ରବୋଧି ।
ଶୁଣି ବୈଷ୍ଣବ ଦାସର ହଜି ଯାଏ ବୁଦ୍ଧି ହେ । ୮ ।

( ରାଗ—ଦୀର୍ଘଚାନ୍ଦ, ତାଳ—ତ୍ରିପୁଟା )

ନମାଇଁ ଚାନ୍ଦଙ୍କ ବାଣୀ, ଶୁଣି ଶଚୀ ଠାକୁରାଣୀ
ଧୈର୍ଯ୍ୟ ଧରି ସମ୍ଭାଳିଲେ ଶୋକ ।
ମନକୁ ମନ ବୁଝାଇ ଦୀର୍ଘ ନିଶ୍ୱାସ ପକାଇ
ବାହାଞ୍ଚଳେ ପୋଛନ୍ତି ଲୋତକ ହେ ।୧।
ବୋଲନ୍ତି ଆରେ ନିମାଇଁ ନିର୍ଭାଗୀ ମୋ ପରି ନାହିଁ
ଜାଣିଲି ମୁଁ ଏତେ ଦିନେ ଧନ ।
ବିଷ୍ଣୁପ୍ରିୟା ବଧୂ ମୋର ତୋ ବିହୁନେ କି ପ୍ରକାର
ପିଣ୍ଡେ ତାର ରଖିବ ଜୀବନ ରେ ।୨।
ଗୁଡ଼ ନାହିଁ ବାଲ୍ୟ ଦଶା ନବ ଯୌବନା ସହସା
ସହିବକି ଦାରୁଣ ବିରହ ।
ଏକେ ଅଳ୍ପଳା ସୁନ୍ଦରୀ ଆଜନମ୍ମ ସୁକୁମାରୀ
କେମନ ବଞ୍ଚିବ ମୋତେ କହ ରେ ।୩।
ଏପରି ପତ୍ନୀକି ତେଜାର ବୁଝାଇବି କି ପ୍ରକାର
ନ ଦିଶଇ ବୁଦ୍ଧି ବାଟ ମୋତେ ।
ତାକୁ ଯାହା ଫିଟୁ ଗୁଡ଼ ହୋଇ ସେ କୋଡ଼ କରୁଡ଼
ବ୍ୟାକୁଳ ନ ହେଇବଟି କେତେ ରେ ।୪।
ଆରେ ମୋ ଅଞ୍ଚଳ ନିଧି ଯାଅ ତାହାକୁ ପ୍ରବୋଧି
ଯେମନ୍ତେ ସେ ନ ହୋଇବ ଝୁରି ।
କହେ ବଇଷ୍ଣବ ଦାସ ଦାରୁଣ ବିଚ୍ଛେଦ କ୍ଲେଶ
ଜଳନ୍ତା ଅନନ୍ତ ବଳକରି ।୫।



( ରାଗ—କଳସା ତାଳ—ପହପଟ )

ମାତାଙ୍କୁ ପ୍ରବୋଧ ଦେଇ କହନ୍ତ ନମାଇଁ ।
ନ କର ଭଜାର୍ଦ୍ଧ ଚନ୍ତା ମାତ ଏଥି ପାଇଁ ଗୋ । ୧ ।
ଶାସ୍ତ୍ର ବଚନେ ବୋଧିବ ବିଷ୍ଣୁପ୍ରିୟା ମନ ।
ପରମାର୍ଥ ତତ୍ତ୍ୱମର୍ମ ଯାବତ ବଧାନ ଗୋ । ୨ ।
ଦେବଇଁ ବୈରାଗ୍ୟ ପୂର୍ଣ୍ଣ ହିତ ଉପଦେଶ ।
ଯେହ୍ନେ ବିଷ୍ଣୁପ୍ରିୟା ଝୁରି ନ ହୋଇବ ଲେଶ ଗୋ । ୩ ।
ସଜ୍ଞ ସ୍ୱାଧ୍ୱୀ ସୁଲକ୍ଷଣା ଧର୍ମ ପରାୟଣା ।
ତାହାର ଚରିତ୍ର ଗୀତ ଅଛୁ ମୋତେ ଜଣା ଗୋ । ୪ ।
ପୂର୍ବରୁ କଥା ପ୍ରସଙ୍ଗେ କହୁଛୁ ତାହାକୁ ।
ବିଶେଷେ ଦେଖାଇ ପ୍ରେମ ଭକତି ରାହାକୁ ଗୋ । ୫ ।
ଅବୋଧିନୀ ନୁହଇ ସେ ଅଛୁ ଦିବ୍ୟଜ୍ଞାନ ।
ନିଶ୍ଚୟ ଧଇର୍ଯ୍ୟ ଧରି ସୁଖେ ନେବ ଦିନ ଗୋ । ୬ ।
ସୁଶିକ୍ଷିତା ଅତ୍ୟନ୍ତ ସୁଶୀଳା ବିଷ୍ଣୁପ୍ରିୟା ।
ତା ପାଇଁ ନ ଭାଳ କିଛି ଦମ୍ଭ କର ହିୟା ଗୋ । ୭ ।
ଏମନ୍ତ ପ୍ରକାରେ ଗୌରଚନ୍ଦ୍ରମା ନମାଇଁ ।
ଶଚୀ ମାତାଙ୍କୁ ଅନେକ କହିଲେ ବୁଝାଇ ହେ । ୮ ।
ମଉନ ହୋଇଲେ ଶୁଣି ସେ ମିଶ୍ର ଘରଣୀ ।
ଉତ୍ତର ଦେବାକୁ କିଛି ନ ସ୍ଫୁରିଲା ବାଣୀ ହେ । ୯ ।
ସେ ପୁତ୍ର ବତ୍ସଳାଙ୍କର ଶ୍ରୀଚରଣ ଧୂଳି ।
ଆପେ ଶ୍ରୀ ନମାଇଁ ଶୁଦ୍ଧ ଶିରେ ହେଲେ ବୋଳି ହେ । ୧୦ ।
ତହୁଁ ନିବାର ପ୍ରଣମି ହୋଇଲେ ବାହାର ।
ନିଜ ବିଳାସ ଭବନେ ପ୍ରଭୁ ବିଶ୍ୱମ୍ଭର ହେ । ୧୧ ।

ବିଜୟ କଲେ ସାନନ୍ଦେ ପଲଙ୍କ ଉପରେ ।
ସଖି ବିଷ୍ଣୁପ୍ରିୟାଙ୍କର ମନ ବଢ଼ିବାରେ ହେ । ୧୨ ।
ଏସନ ସମୟେ ତହିଁ ପ୍ରଭୁଙ୍କ ପ୍ରେୟସୀ ।
ପାଦପଦ୍ମେ ନମସ୍କାର କଲେ ଶୁଭ୍ରକେଶୀ ହେ । ୧୩ ।
ସେ ପ୍ରେମ ଦମ୍ପତିଙ୍କର ଚରଣେ ଶରଣ ।
ମାଗଇ ଅଧମ ଦାସ ବୈଷ୍ଣବ ଚରଣ ହେ । ୧୪ ।



( ରାଗ—ଲଘୁକେଦାର. ତାଳ—ଝମ୍ପା )

ବିଷ୍ଣୁପ୍ରିୟା ହରଷ ବରଷେ । ବସି ନିମାଇଁଙ୍କ ପଦ ପାଶେ । ୧ ।
ସୁଦୀର୍ଘ ନିଶ୍ୱାସ ତ୍ୟାଗ କରି । ନିରେଖି ଶ୍ରୀମୁଖ ଚନ୍ଦ୍ର ଶିରୀ । ୨ ।
କାତରେ କମ୍ପାନ୍ତି କଳେବର । ମୁଖରଖି ପ୍ରଭୁ ବକ୍ଷପର । ୩ ।
କଣ୍ଠ ବାନ୍ଧି ଭୁଜଲତା ଯୁଗେ । ଅତିଶୟ ପ୍ରୀତି ଅନୁରାଗେ । ୪ ।
ବେନି ନୟନରୁ ଲୁହ ଧାର । ବହିଯାଏ ହୋଇ ଖରତର । ୫ ।
ସେ ଲୋତକେ ତିନ୍ତେ ହୃଦବାସ । ଅନ୍ତରେ ଲଭି ମହାପ୍ରାଶ । ୬ ।
ପୃଚ୍ଛନ୍ତେ ପ୍ରଭୁଙ୍କ ଅଭିପ୍ରାୟ । ଆକୁଳେ ପରାଣ ନୁହେ ଥୟ । ୭ ।
ଗଦ ଗଦ ଅଧ ଅଧ ବାଣୀ । କ୍ଷଣେ କ୍ଷଣେ ଅଚେତନ ପୁଣି । ୮ ।
କହି ନ ପାରନ୍ତି ମନକଥା । ଅସହନ ସେ ଦାରୁଣ ବ୍ୟଥା । ୯ ।
ଏ ଗତିକ ଦେଖି ଶ୍ରୀ ନିମାଇଁ । ନେତ୍ର ଯୁଗେ ଲୋତକ ଜମାଇ ।୧୦।
ପ୍ରବୋଧନ୍ତି ପ୍ରାଣପ୍ରିୟା ମନ । କିମ୍ପାଇଁ ଏପରି ହେଉ ଧନ ।୧୧।
କହ କହ ମନ କଥା ଫେଇ । କି ଲାଗି ଦୁଃଖିତ ପ୍ରିୟସହୀ ।୧୨।
ପ୍ରଭୁଙ୍କ ଶ୍ରୀମୁଖ ବାକ୍ୟ ଶୁଣି । କରୁଣ କ୍ରନ୍ଦନେ ଠାକୁରାଣୀ ।୧୩।
ଶ୍ରୀଚରଣ ଧରି ପଚାରନ୍ତି । କହ ନାଥ ପ୍ରକୃତ ଭାରତୀ ।୧୪।

କି ଶୁଣୁଛି ଲୋକ ମୁଖୁଁ ମୁହିଁ । କହ ମୋର ମୁଣ୍ଡେ ହାତ ଦେଇ ।
ତୁମ୍ଭେ କି ହୋଇବ ସନ୍ନ୍ୟାସି । କଥା ହେଉନ୍ତି ଏ ନଦୀୟାବାସୀ ।
ଶୁଣି ଛାତି ଫାଟିଯାଏ ମୋର । ଦିଅ ପ୍ରଭୁ ଯଥାର୍ଥ ଉତ୍ତର । ୧୭ ।
ଦୁଃଖୀ ବଇଷ୍ଣବ ଦାସ ଭାଷେ । ସଂସାର ଛାଡ଼ିବ କି ସକାଶେ । ୧୮ ।



( ରାଗ—ଷଡ଼କେଦାର, ତାଳ—ଝୁଲା )

ବାରମ୍ବାର ପ୍ରଭୁ ଚରଣ ଧରି । ଶୋକ ଭରେ ବିଷ୍ଣୁପ୍ରିୟା ସୁନ୍ଦରୀ ॥
ବୋଲନ୍ତି ହେ ମୋର ପ୍ରାଣବଲ୍ଲଭ ।
ଦେଶାନ୍ତରେ ତୁମ୍ଭେ ଯିବେ ହେ ଯିବ ।୨।
ଏ ଛାର ଜୀବନେ କି କାର୍ଯ୍ୟ ମୋର । ନିଶ୍ଚୟ ମରିବି ଖାଇ ଜହର ।
ଶୁଣିଲି କେବଳ ଏ ଦୁଃଖ ସମ୍ବାଦ । ସନ୍ତାପ ଅନଳେ ଜଳେ ମୋ ହୃଦ
ତୁଟାଇବ କି ମୋ ଆଶା ଭରସା । ଘଟାଉଛ ଆଜି ଏକି ଦୁର୍ଦ୍ଦଶା ।
ଧିକ ମୋହର ଏ ଦେହ ଯୌବନ । ଅଦୃଷ୍ଟରେ ଅଛି କି ହ୍ମାନମାନ ।
ଶିରିଷ କୁସୁମ ଜିଣି କୋମଳ । ଶ୍ରୀଅଙ୍ଗ ରଖିବ ଚରଣ ତଳ ।୭।
ମଣ୍ଡାଳିବ ନାହିଁ ଯଦି ମୁଁ ଆଉ । ଧିକ ଏ ଜୀବନ ପରାଣ ଯାଉ ।୮।
ସୁଖମୟ ମୁଖ ଇନ୍ଦୁ ତୁମ୍ଭର । କାହିଁ ଲୁଚାଇବ ହେ ପ୍ରାଣେଶ୍ୱର ।୯।
ସୁକୁମାର ଏହି ମୃଦୁ ଚରଣେ । ଭ୍ରମିବ କେମନ୍ତେ କଣ୍ଟକ ବନେ ।
ଏ ଦାସୀକି ଦେଇ ଦାରୁଣ ଦୁଃଖ । ଅର୍ଜିବ ନାଥ କେବଣ ସୁଖ ।
ବୃଦ୍ଧା ଜନନୀଙ୍କି କାହାକୁ ଦେଇ । କେଉଁଆଡ଼େ ଯିବ ହେ ପ୍ରାଣସାଇଁ ।
ନାହିଁକି ହେ ଧର୍ମ ଭୟ ତୁମ୍ଭର । ହୃଦୟ କରୁଛ କେଡ଼େ ନିଷ୍ଠୁର ।
ତୁମ୍ଭ ଭକ୍ତ ସଙ୍କୀର୍ତ୍ତନୀୟା ଗଣେ । କପରି ବଞ୍ଚିବେ ତବ ବିହୁନେ ।
ନଦୀୟା ନଗରବାସୀଏ ଯେତେ । ତୁମ୍ଭଙ୍କୁ ଝୁରି ମରିବେ ସମସ୍ତେ ।
ତୁମ୍ଭ ବିନେ ଆହେ ଜୀବନକର୍ତ୍ତା । କେ ଜାଣିବ ମୋର ଅନ୍ତର୍ବ୍ୟଥା ।

ତୁମ୍ଭ ବିଚ୍ଛେଦ କି ପାରିବି ସହି । ଦଂଶିବ ମରମେ ବିରହ ଅହି ।୧୭
ନ କର ଏମନ୍ତ ବିଧୁର ବିଧି । ତୁମ୍ଭ ପରା ପ୍ରଭୁ କରୁଣା ସିନ୍ଧୁ ।୧୮।
ସେ ଦୟାମାୟା କି ଛାଡ଼ୁଛ ଦିନୁ । ହେ ନାଥ କଷିତ କାଞ୍ଚନ ତନୁ ।
ମୋ ରାଣଠି ପ୍ରଭୁ ନୁହ ସନ୍ନ୍ୟାସୀ । କହେ ବଇଷ୍ଣବ ବିରଜଦାସୀ ॥



( ରାଗ—ମଙ୍ଗଳ ଗୁର୍ଜ୍ଜରୀ,   ତାଳ—ଏକତାଳୀ )

ବିଷ୍ଣୁ ପ୍ରିୟାଙ୍କର ମୁଖୁ ଏ ବଚନ ଶୁଣି ।
ଅଶେଷ କରି କହନ୍ତି ଓଷ୍ଠେ ଦେଇ ପାଣି ହେ । ୧ ।
ମୃଦୁ ହାସେ ସମ୍ବୋଧନ କରି ନାନାମତେ ।
ପ୍ରବୋଧି ବାକ୍ୟେ ମଧୁରେ ବୁଝାନ୍ତି ସେ କେତେ ହେ ।୨।
ବାସାଞ୍ଚଳେ ପ୍ରିୟା ମୁଖ ପୋଛନ୍ତି ବାରମ୍ବାର ।
ରସେ ମଜାଇଲେ ରସ କୌତୁକ ନାଗର ହେ । ।
ମିଛେ ଦୁଃଖ କର କମ୍ପା ପରାଣ ପ୍ରେୟସି ।
କେ କହିଲା ତୁମ୍ଭ ଆଗେ ହେବି ମୁଁ ସନ୍ନ୍ୟାସୀ ଗୋ । ୪ ।
ଯେ କାଳେ ସନ୍ନ୍ୟାସୀ ହେବି କହିବି ନାହିଁ କି ?
ବୃଥା ସଖୀ ! ମନ ଊଣା କରୁଛ କାହିଁକି ଗୋ । ୫ ।
ଏତେ ବୋଲି ଗୌରହରି ନଦୀୟା ମୋହନ ।
ଚନ୍ଦ୍ର ଖଣ୍ଡ ଗଣ୍ଡସ୍ଥଳେ ମଣ୍ଡିଲେ ଚୁମ୍ବନ ହେ । ୬ ।
ଲୀଳା ଲାବଣ୍ୟ ଲହରୀ ପ୍ରଭୁ ଗୌରଶଶୀ ।
ପ୍ରେମ ଆଳାପରେ ପ୍ରାଣପ୍ରିୟା ମନ ତୋଷି ହେ ।୭।
ବିନୋଦ ବିଳାସ ରସ ଶୃଙ୍ଗାରେ ମଜ୍ଜିଲେ ।
ସତୀ ବିଷ୍ଣୁପ୍ରିୟା ମନୁ ଦୁଃଖ ବରଜିଲେ ହେ ।୮।
ନିଶି ଶେଷ ଯାମେ ପୁଣି କାନ୍ତ କର ଧରି ।
ପଚାରିଲେ ବିଷ୍ଣୁପ୍ରିୟା ସବିନୟ କରି ହେ । ୯ ।

ଆହେ ନାଥ ସତ କହ ମୋର ଦେହ ଛୁଇଁ ।
ସନ୍ନ୍ୟାସୀ ହେବାକୁ ମନ କାହିଁକି ବଳଇ ହେ । ୧୦ ।
ଅନୁମାନେ ଜାଣୁଛି ମୁଁ ତୁମ୍ଭର ଗୃଢ଼ଭାଷ ।
ଅଗୋଚରେ ଯିବ ପରା ମୋତେ ଛାଡ଼ିକରି ହେ । ୧୧ ।
ନଦୀୟା ନଗରପାକ ପଡ଼ିଅଛି ହୁରି ଚହେ ।
ସାହି ପଡ଼ୋଶୀଙ୍କ ମୁଖୁଁ ଶୁଣୁଛି ଆତୁର ହେ । ୧୨ ।
ତୁମ୍ଭର ସଂସାର ତ୍ୟାଗ ବାରତା ଅନଳ ।
ହୃଦକୁ ଜାଳୁଛି ମୋର ସନ୍ତତେ କେବଳ ହେ । ୧୩ ।
କପଟ ନ କର ମୋରେ କହ ପ୍ରାଣଧନ ।
ତୁମ୍ଭେ ଗଲେ କେଉଁପରି ଧରିବି ଜୀବନ ହେ । ୧୪ ।
ଯେବେ ଗୃହ ତ୍ୟାଗି ହେବ ବସ୍ତ୍ରରଛ ଛଳେ ।
ସନ୍ନ୍ୟାସିନୀ କରି ପ୍ରଭୁ ସଙ୍ଗେ ନିଅ ମୋତେ ହେ । ୧୫ ।
ତୁମ୍ଭେ ଯୋଗୀ ହେଲେ ମୁଁ ହେବି ଯୋଗିଆଣୀ ।
କାହିଁକି ବା ଏ ଗୃହେ ରହିବ ପ୍ରାଣମଣି ହେ । ୧୬ ।
କି ସୁଖ ପାଇଁକି ଅବା ରଖିବି ଜୀବନ ।
ଅକାରଣେ ହେବ ସିନା ଏ ନବ ଯୌବନ ହେ । ୧୭ ।
ବିଷ୍ଣୁପ୍ରିୟାଙ୍କର ମୁଖୁଁ ଶୁଣି ଏ ବଚନ ।
ସାନ୍ତ୍ୱନା ଦେଇ କହନ୍ତି ଗୌର ଭଗବାନ ହେ । ୧୮ ।
ସେ ପ୍ରେମ ଦମ୍ପତିଙ୍କର ପାଦପଦ୍ମ ଚିନ୍ତି ।
ଅଧମ ବୈଷ୍ଣବ ଦାସ ବିରଚଇ ଗୀତି ହେ । ୧୯ ।

—ଃ০ଃ—

( ରାଗ—ବଙ୍ଗଳା ଶ୍ରୀ, ତାଳ—ଆଠତାଳୀ )

ବିଷ୍ଣୁପ୍ରିୟା ମୁଖ, ଚୁମ୍ବି ପଦ୍ମମୁଖ,
ଶ୍ରୀ ନିମାଇଁ କହୁଛନ୍ତି ।
ଶୁଣ ପ୍ରାଣେଶ୍ୱରୀ, ନବୀନ କିଶୋରୀ,
ଏବେ ଯଥାର୍ଥ ଭାରତୀ ଗୋ । ୧ ।

ତୁମ୍ଭ ମନେ ଦୁଃଖ, ନ କର ଲୋଚକ,
ପୂରାଇ ନୟନ ଯୁଗେ ।
ହେବଇଁ ସନ୍ନ୍ୟାସୀ, ଆଗୋ ବିଧୁହାସୀ,
କୃଷ୍ଣ ପ୍ରେମ ଅନୁରାଗେ ଗୋ । ୨ ।

ନ ଜାଣକି ମୁହିଁ, ଗୋପର କହ୍ନାଇଁ,
ନନ୍ଦ ଯଶୋଦାଙ୍କ ବହି ।
ଏ କଳି ଯୁଗରେ, ରାଧିକା ଭାବରେ,
ନିମାଇଁ ନାମ ବହୁଛି ଗୋ । ୩ ।

ବୃଷଭାନୁ ସୁତା, ପ୍ରେମ କଳ୍ପଲତା,
ରସମୟୀ ବିନୋଦିନୀ ।
ତାର ଭଜନ ରଙ୍ଗ, ବୁଝିବା କାରଣ,
ମୋ ଅବତାର ମିତଣୀ ଗୋ । ୪ ।

ରାଧା ପ୍ରେମ ବାଧା- କାନ୍ତରେ ଶରଧା,
ରାଧା ଭାବେ ଜରଜର ।
ପ୍ରେମ ଭକ୍ତି ଲୀଳା, ପ୍ରକଟନେ ହେଲା,
ମୁଁ ସିନା ନଟି ବାସର ଗୋ । ୫ ।

ରାଧା ନାମ ଗାନେ, କୀର୍ତ୍ତନ ବିଧାନେ,
ନବଦ୍ୱୀପ ନବଲୀଳା ।

କଲଇଁ ଭିଆଣ ଘେନ ଭକ୍ତଗଣ
ଶ୍ରୀବାସ ଅଙ୍ଗଣେ ମେଳା ଗୋ । ୬ ।

ଏହ୍ନ ସଙ୍କୀର୍ତ୍ତନ ନ ହୋଇବ ଶୂନ୍ୟ
ନଦୀୟା ନଗରୁ ପ୍ରିୟେ ।
ହରି ନାମ ଶୁଣି ଦିବସ ରଜନୀ
ହରିବ ତୁମ୍ଭେ ନଶ୍ଚଏଁ ଗୋ । ୭ ।

ଯେତେବେଳେ ମୋତେ ଭାବିବ ଗୋ ଚିତ୍ତେ
ସେ କାଳେ ଦର୍ଶନ ହେବ ।
ବ୍ୟର୍ଥରେ ଧନ ନ ଶୁଖା ବଦନ
କାଲି ମୁଁ ସନ୍ନ୍ୟାସୀ ହେବି ଗୋ । ୮ ।

କୃଷ୍ଣ ନାମେ ରସି ଘରେ ଥାଅ ବସି
ଛାଡ଼ ମୋର ପ୍ରତି ଆଶା ।
ସନ୍ତାପ ସିନ୍ଧୁରେ ପରାଣ ବନ୍ଧୁରେ
ନ ଲଭ ଦାରୁଣ ଦଶା । ୯ ।

ତୁମ୍ଭ ସ୍ନେହ ପ୍ରୀତି ଅମୂଲ୍ୟ ସମ୍ପତ୍ତି
ପାସୋରିବି ନାହିଁ ମନୁ ।
ଯହିଁ ତହିଁ ଥିଲେ ତୁମ୍ଭ ପାଶେ ଭଲେ
ଅଛୁଟି ଜାଣ ସୁତନୁ ଗୋ । ୧୦ ।

ଏତେ ବୋଲି ଗୌର ଭକ୍ତ ଚିତ୍ତ ଚୋର
ପ୍ରିୟାଙ୍କୁ ପ୍ରବୋଧ ଦେଇ ।
କଲେ ଆଲିଙ୍ଗନ ଭୁବନ ମୋହନ
ରସେ ମାନସ ଭୁଲାଇ ହେ । ୧୧ ।

ଚଳିବେ ନିଶାନ୍ତେ ସନ୍ନ୍ୟାସ ନିମନ୍ତେ
ନ ଜାଣନ୍ତି ବିଷ୍ଣୁପ୍ରିୟା ।
ଚିନ୍ତ ସେହି କଥା ଭ୍ରମାଉଛି ମଥା
ବୈଷ୍ଣବ ଦାସ ବାଇଆ ହେ । ୧୨ ।

—:୦:—

( ରାଗ—କଳସା, ତାଳ—ଆଠତାଳୀ )

ପ୍ରାଣକାନ୍ତ ନିମାଇଁଙ୍କ ସାନ୍ତ୍ୱନା ବଚନେ ।
ସତୀ ବିଷ୍ଣୁପ୍ରିୟା ଶାନ୍ତ ହେଲେ ଭାବ ମନେ ହେ । ୧ ।
ଆଜନମ ସୁକୁମାରୀ ସେ କାଞ୍ଚନ ଲତା ।
ପଡୁଗଲେ ଶେଯେ ହୋଇ ନିଦ୍ରା ଅଭିଭୂତା ହେ । ୨ ।
କୋମଳ କର ପଲ୍ଲବ ପ୍ରଭୁ ଅଙ୍ଗେ ଦେଇ ।
ଶୟନ କରି ଅଛନ୍ତି ନିଦ୍ରାରେ ଘୁମାଇଁ ହେ । ୩ ।
ପତିପ୍ରାଣା ଅବଳା ଅଳ୍ପଳୀ ସୁକୁମାରୀ ।
ଶ୍ରୀ ଗୌରାଙ୍ଗ ବାମାଙ୍ଗିନୀ ଅପୂର୍ବ ସୁନ୍ଦରୀ ହେ । ୪ ।
ନିମାଇଁଙ୍କ ଠାରୁ ତତ୍ତ୍ୱ ଉପଦେଶ ଶୁଣି ।
ପାସୋରି ଅଛନ୍ତି ଦୁଃଖ ମନେ ମନେ ଗୁଣି ହେ । ୫ ।
ନ ଜାଣନ୍ତି ନିଶି ପ୍ରାତେ ଘଟିବ କି ଦଶା ।
କାନ୍ତ ପ୍ରେମ ପ୍ରଦର୍ଶନେ ରହିଛି ଭରସା ହେ । ୬ ।
ଦୁଃସହ ଶୋକ ବ୍ୟାପାର କରୁଛି ପ୍ରତୀକ୍ଷା ।
ଯେଣୁ ଗୌର ଯିବେ ଛାଡ଼ି ନିଶାନ୍ତରେ ଏକା ହେ । ୭ ।
ସକଳ ମାୟା ମମତା ଡୋରି ସୁବନ୍ଧନ ।
ଛିନ୍ନ ବିଚ୍ଛିନ୍ନ କରିବେ ଶ୍ରୀ ଶଚୀ ନନ୍ଦନ ହେ । ୮ ।

ଶୋକ ସିନ୍ଧୁରେ ବୁଡ଼ିବ ନଦୀୟା ନଗର ।
ଚଉଦିଗେ ହୁଏ ପଡ଼ିଯିବ ହା ହା କାର ହେ । ୯ ।
ଶଚୀ ମାତାଙ୍କ ଦୁର୍ଦ୍ଦଶା ହେବ ଅକଥନ ।
ଶୋକାକୁଳେ ବିଷ୍ଣୁପ୍ରିୟା ହରିବେ ଚେତନ ହେ ।୧୦।
ଏକ ଦିଗେ ସ୍ନେହପୂର୍ଣ୍ଣ ପ୍ରେମର ବନ୍ଧନ ।
ଅନ୍ୟ ଦିଗେ ବେଶାଶିତ ଡୋର କଉପୀନ ହେ । ୧୧ ।
ଦୁଇ ଆଶ୍ରମର ସନ୍ଧିସ୍ଥଳେ ଗୌରମଣି ।
ପଣ୍ଡିତ ହୋଇ ମାନସେ କରନ୍ତ ଗଣେଣି ହେ । ୧୨ ।
ଦେଖୁ ଦେଖୁ କ୍ରମେ ପାହି ଆସିଲା ଶର୍ବରୀ ।
ତ୍ୟାଗ ଆୟୋଜନ କଲେ ପ୍ରଭୁ ଗୌରହରି ହେ । ୧୩ ।
ନଯୋଡ଼ ନିଦ୍ରାରେ ଶୋଇଛନ୍ତି ବିଷ୍ଣୁପ୍ରିୟା ।
ଛାଡ଼ିଲେ ଗୌରାଙ୍ଗ ଗୃହ ସବୁ ସ୍ନେହ ମାୟା ହେ । ୧୪ ।
ଅଙ୍ଗରୁ କାଢ଼ିଲେ ପ୍ରଭୁ ରତନ ଭୂଷଣ ।
ପାଲଟି ଗେରୁଆ ବାସ କଲେ ପରିଧାନ ହେ । ୧୫ ।
ଧୀରେ ଧୀରେ ଶୟନ ମନ୍ଦିରୁ ବିଶ୍ୱମ୍ଭର ।
ସନ୍ନ୍ୟାସ ଯାତ୍ରା କାରଣେ ହୋଇଲେ ବାହାର ହେ ।୧୬।
ଦେହଳି ଲଙ୍ଘନେ ବଢ଼ାଇଲେ ପଦ୍ମପାଦ ।
ବୈଷ୍ଣବ ଦାସର ସେହି ଚରଣ ସମ୍ପଦ ହେ । ୧୭ ।

—:୦:—

( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ଦାବାନଳ ଜାଳ ସବୁରି ହୃଦରେ
ମହାପ୍ରଭୁ ଗୌରହରି ।
ଶୟନ ମନ୍ଦିରୁ ବାହାର ହୋଇ
ଅପଣେ ଚଲେ ବାହାରେ ହେ । ୧ ।

ସନ୍ନ୍ୟାସ ନିମନ୍ତେ କାଟୁଆର ପଥେ
　　　　　　　　ଚଳିଲେ ସେ ଇଚ୍ଛା ସୁଖେ ।
କରି ନମସ୍କାର ହେଲେ ଗଙ୍ଗା ପାରି
　　　　　　　　ହରଷ ବରଷ ମୁଖେ ହେ । ୨ ।

ଦ୍ୱରେ କୃଷ୍ଣ ନାମ କରୁଛନ୍ତି ଗାନ
　　　　　　　　କହୁ ରାଧେ ରାଧେ ବୋଲି ।
ଏସ ନୂତନ ଭାବ କେ ବୁଝି ପାରିବ
　　　　　　　　ସନ୍ନ୍ୟାସ ଆଶ୍ରମ କେଳି ହେ । ୩ ।

ଭୀଷଣ ମୂରତି ପରିଗ୍ରହ କରି
　　　　　　　　ଅଛନ୍ତି ନଦୀୟା ଇନ୍ଦୁ ।
ପ୍ରଭାତ ହୋଇଲେ ନଦୀୟା ନଗରେ
　　　　　　　　ଉଚ୍ଛୁଳିବ ଶୋକ ସିନ୍ଧୁ ହେ । ୪ ।

ମହା ପାଗଳିଆ ଜଞ୍ଜାଳ ଅଳିଆ
　　　　　　　　ଛଡ଼ାଇ ଉଦାସ ମତେ ।
କାଞ୍ଚନ ନଗର ପଥେ ଅଗ୍ରସର
　　　　　　　　ହୋଇଛନ୍ତି ଅଦଭୁତେ ହେ । ୫ ।

ତାହାଙ୍କର ଇଚ୍ଛା ବୁଝିବା ଶକତି
　　　　　　　　ଅଛି ବା କାହାର ଭବେ ।
ସାରା ନବଦ୍ୱୀପେ ଚହଳ ପଡ଼ିବ
　　　　　　　　ମାତ୍ର ହାହାକାର ରବେ ହେ । ୬ ।

ଏହି କଥା ହବ ଭାବ ସୁନାଇଛବ
　　　　　　　　ଚଳନ୍ତି ଗନ୍ତବ୍ୟ ପଥେ ।
ପ୍ରଭୁ ଗୌରହରି ଆରୋହଣ କରି
　　　　　　　　ଅଛନ୍ତି ବୈରାଗ୍ୟ ରଥେ ହେ । ୭ ।

ସ୍ୱେଦେପୂର୍ଣ୍ଣ ଅଙ୍ଗ ପ୍ରେମର ତରଙ୍ଗ
ଖେଳଇ ଅନ୍ତର ଗତେ ।
ପ୍ରେମ ଅଶ୍ରୁ ନୀର ହୋଇ ଧାର ଧାର
ଗଳ ପଡ଼େ ଦୁଇ ନେତ୍ରେ ହେ । ୮ ।

ମୁଖେ କୃଷ୍ଣ ହର ଉଚ୍ଚାର ଉଚ୍ଚାର
ଚୂଲ ଯାଉଛନ୍ତି ଗୋରା ।
ଭକ୍ତ ଗଙ୍ଗା ଦ୍ୱାର, ଶଚୀ ମାତାଙ୍କର
ନୟନାନନ୍ଦ ପସରା ହେ । ୯ ।

ସବୁ ସୁଖ ଆଶା ସକଳ ଭରସା
ତୁଟାଇ ଆପଣା ମନୁ ।
କ ଦାରୁଣ ଦୁଃଖେ ପକାଇ ସଭିଙ୍କି
ଯାଇଛନ୍ତି ଶଚୀ ସୂନୁ ହେ । ୧୦ ।

ଏଣେ ଶୋଇଛନ୍ତି ବିଷ୍ଣୁପ୍ରିୟା ସତୀ
ଶୟନ ପଲଙ୍କ ପରେ ।
ନିଦ୍ରାଭଙ୍ଗ ହେଲେ ପାଗଳିଣୀ ହେବେ
ପ୍ରାଣନାଥ ବିଚ୍ଛେଦରେ ହେ । ୧୧ ।

ଦେବୀ ଶଚୀ ମାତା କେତେ ଆକୁଳତା
ନ ହେବଟି ପୁତ୍ର ଲାଗି ।
ଗଦାଧର ହର ଦାସ ଆଦି କର
ଝୁରିବେ ସକଳ ସଙ୍ଗୀ ହେ । ୧୨ ।

ସର୍ବ ନର ନାରୀ ଢାଳ ଅଶ୍ରୁ ବାରି
ଅବନୀରେ ଯିବେ ଲୋଟି ।
ଗୌରାଙ୍ଗ ବିହନେ ନଦୀୟା ଭୁବନେ
ଅନ୍ଧକାର ଯିବ ଘୋଟି ହେ । ୧୩ ।

କି କଲି କି କଲି ପ୍ରଭୁ ବିଶ୍ୱମ୍ଭର
ପରମ ଦୟାଳୁ ମଣି ।
ଯେତେ ଦାସୀ ଦାସ, ହେବେତ ନିଗଣ
ବଇଷ୍ଣବ ଦାସ ଭଣି ହେ । ୧୪ ।

—:—

( ରାଗ—କଳସା, ତାଳ—ଏକତାଳି )

ଶୟନ-ମନ୍ଦିରେ ଭୁଜ-ତଳପ ଉପରେ ।
ଶୋଇଥିଲେ ବିଷ୍ଣୁପ୍ରିୟା ଗାଢ଼ ନିଦ୍ରାଭରେ ହେ । ୧ ।
ଚେତ ଉଠିଲେ ସୁନ୍ଦରୀ ବେନି ଚକ୍ଷୁ ମଳି ।
ଦେଖିଲେ ନାହାନ୍ତି ପାଶେ ଶଚୀଙ୍କ-ସଙ୍ଖାଳି ହେ । ୨ ।
ପାଟ ପୀତାମ୍ବର ଯୋଡ଼ ଅଳଗୁଣି ପରେ ।
ଥୁଆ ହୋଇଅଛି ଦୃଷ୍ଟି ପଡ଼ିଲା ତହିଁରେ ହେ । ୩ ।
ଶ୍ରୀକର ସ୍ୱର୍ଣ୍ଣ କଙ୍କଣ କର୍ଣ୍ଣର କୁଣ୍ଡଳ ।
ରଖି ଯାଇଛନ୍ତି ପ୍ରଭୁ କରି ଏକ ଠୁଳ ହେ । ୪ ।
ତାହା ଦେଖି ବିଷ୍ଣୁପ୍ରିୟା ବିସ୍ମୟ ମାନସେ ।
ଆକୁଳ ହୋଇ ତତକ୍ଷଣେ କାନ୍ଦିଲେ ବିଶେଷେ ହେ । ୫ ।
ବାଣ ବିଦ୍ଧ ହରିଣୀ ପରାୟେ ମହାସତୀ ।
ଅଧୀର ହୋଇ ଉଚ୍ଚରେ ରୋଦନ କରନ୍ତି ହେ ।୬।
ଆନନ୍ଦମୟ ଗୌରଙ୍କ ଶୟନ ଆଳୟ ।
ଦିଶିଲା ବିଷ୍ଣୁପ୍ରିୟାଙ୍କୁ ଶ୍ମଶାନର ପ୍ରାୟ ହେ । ୭ ।
ପତି ପରାୟଣା ଅତି ବ୍ୟାକୁଳ ଅନ୍ତରେ ।
ଭାସିଲେ ଲୋତକ ଜଳେ ଗୌର ବିରହରେ ହେ । ୮ ।
ହୃଦରେ କର କଚଡ଼ି ହା ହା ନାଥ ବୋଲି ।
ଗଦଗଦେ ଉଚ୍ଚ ସ୍ୱରେ ଛାଡ଼ନ୍ତି ବୋବାଳି ହେ ।

ପାଗଳଣୀ ପରି ହୋଇ ଗଲେ ଗୃହୁଁ ଗୃହୁଁ ।
ସୁଖର ଚନ୍ଦ୍ରକୁ ଗ୍ରାସି ଦେଲା ଦୁଃଖ ରାହୁ ହେ । ୧୦ ।
ଗୌରଙ୍କ ଶ୍ରୀଅଙ୍ଗ ଛଡ଼ା ମାଳତୀର ମାଳା ।
ଗୋଷ୍ଠାଇ ଶଯ୍ୟାରୁ ସଖି ଭଜନ୍ତ ବାଉଳା ହେ । ୧୧ ।
ଗଗନ ଫଟାଇ ସଖି ଗୁଡ଼ ଛିନ୍ତ ରଡ଼ ।
ପ୍ରାଣ କଲବଲେ ସେ ଅବମା ପଟରେ ଗଡ଼ ହେ । ୧୨ ।
କ୍ଷଣେ ଅଚେତନ କ୍ଷଣେ ହୁଅନ୍ତ ସଚେତ ।
ଆକୁଳେ କାନ୍ଦନ୍ତ ଶିରେ କରି କରାଘାତ ହେ । ୧୩ ।
ସେ କରୁଣ କ୍ରନ୍ଦନେ ପାଷାଣ ଯାଏ ଫାଟି ।
କାନ୍ଦଇ ବୈଷ୍ଣବ ଦାସ ଧରଣୀରେ ଲୋଟି ହେ । ୧୪ ।

—✳—

( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ତହୁଁ ଶୋକଭରେ ଶାଶୁଙ୍କ ଆଗରେ
ଯାଇଁ ବିଷ୍ଣୁପ୍ରିୟା ସତୀ ।
କଇଁ କଇଁ ହୋଇ କହନ୍ତ ନିମାଇଁ
ଚନ୍ଦ୍ରଙ୍କର ପ୍ରିୟବତୀ ହେ । ୧ ।
ମାଏ ଗୋ ତୁମ୍ଭର ପୁନ୍ୟ ଗୁଡ଼ ଘର
କେଉଁ ଆଡ଼େ ଗଲେ ଗୃହୁ ।
ସୁଚିକ୍କନ ବସନ ଆଭରଣ ମନ
ଶ୍ରୀ ଅଙ୍ଗରୁ କରି ଖୋଲି ଗୋ । ୨ ।
ନିଦେ ଶୋଇଥିଲି ଜାଣି ନ ପାରିଲି
ପ୍ରଭୁଙ୍କର ମନ କଥା ।
କି ବୁଦ୍ଧି କରିବି କେଉଁ କଡ଼ ଯିବି
ପରାଣେ ଲାଗଇ ବ୍ୟଥା ଗୋ । ୩ ।

କହୁଥିଲେ ମୋତେ ସେ ଗୋ ପୂର୍ବ ରାତେ
ସନ୍ନ୍ୟାସ ହୋଇବେ ବୋଲି ।
ଲୋକ ମୁଖୁଁ ଯାହା ଶୁଣା ଥିଲି ତାହା
ଏବେ ଅନୁଭବ କଲି ଗୋ । ୪ ।
କେଉଁ ପ୍ରାୟୁ ଜୀବ ଏ ପିଣ୍ଡେ ରହିବ ?
ସେ ବସ୍ତୁର ଦିଅ ମୋତେ ।
ଦାସ ବଇଷ୍ଣବ ବିଷ୍ଣୁପ୍ରିୟା ଭାବ
ଭାବ ଭାସେ ଶୋକ ସ୍ରୋତେ ହେ । ୫ ।

——।——

[ ରାଗ—ଚନ୍ଦ୍ରକେଦାର, ତାଳ—ପହପଟ ]

ଶଚୀ ମାତାଙ୍କର ଆଗରେ ଏତେ ।
କାନ୍ଦି କାନ୍ଦି ବିଷ୍ଣୁପ୍ରିୟା କହନ୍ତେ । ୧ ।
ଶୁଣି ନମାଇଙ୍କ ଗର୍ଭଧାରିଣୀ ।
ଶୋକ ଗଦଗଦେ କହନ୍ତି ବାଣୀ । ୨ ।
କି କହୁଛୁ ମୋତେ ମା ବିଷ୍ଣୁପ୍ରିୟା ।
ଶ୍ରବଣେ ଅନ୍ତର ହୁଏ ଗୁଳନୟାଁ । ୩ ।
ସତେ କି ନମାଇଁ ସଦନେ ନାହିଁ ?
ବାହାରି ଗଲି କି ସନ୍ନ୍ୟାସୀ ହୋଇ । ୪ ।
ଆହା ମୁଁ କି ବୁଦ୍ଧି କରିବି ଏବେ ।
କି କଲି ଦଇବ ଆଣି ଗରବେ । ୫ ।
ଆହାରେ ନମାଇଁ ଅଞ୍ଚଳ ନିଧି !
କାହିଁ ଗଲୁ ବାପ ଜୀବନ ବଧି । ୬ ।

ତୋ ବିହୁନେ କେହ୍ନେ ବଞ୍ଚିବି ଧନ ।
ଧିକ ଧିକ ଏ ମୋ ଛାର ଜୀବନ ! ୭ ।
କଣ୍ଟକ ନଗର କଣ୍ଟକ ହେଲା ।
କେଶବ ଭାରତୀ କି ଶିକ୍ଷା ଦେଲା ? । ୮ ।

କପଟି ବସ୍ତୁସେ କି ବାଇ ହେଲୁ ।
ବିଷ୍ଣୁପ୍ରିୟାକୁ ଅନାଥିନୀ କଲୁ । ୯ ।
ଏ ବୃଦ୍ଧ କାଳରେ ଛାଡ଼ିଲୁ ମୋତେ ।
ଆଉ କି ନୟନେ ଦେଖିବି ତୋତେ । ୧୦ ।

ତୋ ଗୁଣ ଯାକ ସୁମରି ସୁମରି ।
ନିମାଇଁରେ ନିଶ୍ଚେ ଯିବି ମୁଁ ମରି । ୧୧ ।
କାହା ମୁଖ ଚାହିଁ ବଞ୍ଚିବି ଦିନ ।
ଧିକ କନା ମୋର କରମ ହୀନ । ୧୨ ।

ମାଆ ମାଆ ବୋଲି କାହାକୁ ଆଉ ।
ମଧୁରେ ଡାକିବୁଟି ଆସୁ ଯାଉ । ୧୩ ।
ଦୁଃଖୀ ସଙ୍ଗାଳରେ ନୟନ ତାରା ।
ହୋଇ ନ ଗଲୁ ଜହର ମହୁରା । ୧୪ ।

ଛି ଛି ଏ ଜୀବନ କାହିଁକି ଅଛି ।
ଆଗରେ ବାପ ଗଲୁ ପଛା ମୁଁ ରୁଛି । ୧୫ ।
ହୃଦୟ ରତନରେ ଗଳାମାଳି ।
ତୋ ବିନେ ଝାସିବି ଅନଳ ଜାଳି । ୧୬ ।

କି ଅବା ଗଙ୍ଗାରେ ପଡ଼ିବି ଡେଇଁ ।
ଆଉ ଏ ପ୍ରାଣ ମୁଁ ରଖିବି ନାହିଁ । ୧୭ ।
ଏହିପରି ଅତି ଆକୁଳ ହୋଇ ।
ବାଉନ୍‌କାନ୍ଦନ୍ତି ହୃଦ ଫଟାଇ । ୧୮ ।

ମୁଣ୍ଡ କୋଡ଼ ହୋଇ ଅବନୀ ପରେ ।
ଗଡ଼ନ୍ତି ଜନନୀ ସନ୍ତାପ ଭରେ । ୧୯ ।
ତାହାଙ୍କ ଦୁର୍ଦ୍ଦଶା ନୟନେ ଦେଖି ।
ବୈଷ୍ଣବ ଦାସ ଅତ୍ୟନ୍ତ ଦୁଃଖୀ । ୨୦ ।



ରାଗ—କରୁଣଶ୍ରୀ, ତାଳ—ତ୍ରିପୁଟା )

ଧରଣୀ ଉପରେ ପଡ଼ି — କାନ୍ଦେ ଶଚୀ ଯାନ୍ତି ଗଡ଼ି
ହା ହା ରେ ନମାଇଁ ବୋଲି କରି ।
କି କଲୁ ଦାରୁଣ ବିଧି — ହରି ନେଲୁ ମୋର ନିଧି
ପ୍ରାଣ ଧରି ରହିବି କିପରି । ୧ ।
ଅଙ୍ଗର ଅଙ୍ଗଦ ବଳା — ମୋ ନମାଇଁ କଣ୍ଠମାଳା
ମନୋହର କର୍ଣ୍ଣର କୁଣ୍ଡଳ ।
ଖଟ ଉପରେ ଅଛି ପଡ଼ି — କ୍ଷୀରୋଦକ ପାଟ ଯୋଡ଼ି
ତାର ପଢ଼ା ପୁସ୍ତକ ସକଳ । ୨ ।
ଦେଖି ମୋ ହୃଦୟ ଫାଟେ — ନୟନୁ ଅନ୍ଧାର ଘୋଟେ
ଜଳବଳ ହୁଏ ପଞ୍ଚ ପ୍ରାଣ ।
ମୋ ନମାଇଁ ଗୃହ ଲାଗି — ନଷ୍ଟପ୍ରାୟ ମୁହିଁ ଅଭାଗୀ
ପଶିବଇଁ ଗହନ କାନନେ । ୩ ।
ଭିକ୍ଷାସିନୀ ହୋଇ ଯିବି — ଯହିଁ ଗୋରାକୁ ଦେଖିବି
କାନ୍ଦିବି ତାହାର ଗଳା ଧରି ।
ସେ ମୋର ଗୌରାଙ୍ଗ ଠାଣି — କେବେ ଦେଖାଇବ ଆଣି
ଦାସ ପଦେ ଖଟିବି ତାହାରି । ୪ ।

ବଇଷ୍ଣବ ଦାସ ଭଣେ କାନ୍ଦ ମାତ ଅକାରଣେ
ଜୀବ ହିତେ ତୁମ୍ଭର ନନ୍ଦନ ।
ଧରିବେ ସନ୍ନ୍ୟାସୀ ବେଶ ଉଦ୍ଧାରିବେ ସର୍ବ ଦେଶ
ଦୟାମୟ ଜଗତ ବନ୍ଦନ ସେ । ୫ ।



( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ବିଷ୍ଣୁପ୍ରିୟା କାନ୍ଦି ଶଚୀଙ୍କି ପ୍ରବୋଧି
କହନ୍ତି ଚରଣ ଧରି ।
ନ କାନ୍ଦ ଜନନୀ ! ନ କାନ୍ଦ ଜନନୀ ! !
ବିଅର୍ଥେ ପାଗଳୀ ପରି ଗୋ । ୧ ।
ନେତ୍ରୁ ଢାଳ ଜଳ ନ ହୁଅ ବିକଳ
ଧୈର୍ଯ୍ୟ ଧରି ହୁଅ ତୁନି ।
ତୁମ୍ଭର ଦୁର୍ଦ୍ଦଶା ଦେଖି ତ ସହସା
ଫାଟି ଯାଉଛି ମୂର୍ଦ୍ଧନୀ ଗୋ । ୨ ।
ଯା ଅଛି କପାଳେ ପୂର୍ବ କର୍ମ ଫଳେ
ଭୋଗ ହେବ ତା ଅବଶ୍ୟ ।
କଲେ ମା ରୋଦନ ହେବ ଅକଲ୍ୟାଣ
ମୋ ପ୍ରଭୁଙ୍କର ଅଶେଷ ଗୋ । ୩ ।
ହୃଦୟର ନିଧି କେତେ ଯେ ପ୍ରବୋଧି
କହିଛନ୍ତି ମୋର ଆଗେ ।
ତୁମ୍ଭଙ୍କୁ ବୁଝାଇ ବୋଧିବାର ପାଇଁ
ଆଦେଶିଛନ୍ତି ସର୍ବେ ଗୋ । ୪ ।

ଶ୍ରୀ ଗୌର ଜନମା ଶଚୀ ଠାକୁରାଣୀ
ବିଷ୍ଣୁ ପ୍ରିୟା ବାଣୀ ଶୁଣି ।
କଣ୍ଠିତ ମାନବ ସମ୍ଭାଳିଲେ ଶୋକ
ବଇଷ୍ଣବ ଦାସ ଭଣି ହେ । ୫ ।

---

( ରାଗ—ମଙ୍ଗଳ ବରାଡ଼ି, ତାଳ—ଏକତାଳୀ )

ନଦୀୟା ନଗର ଭରି କ୍ରମେ ପଡ଼ିଗଲା ହୁରି
ଛାଡ଼ିଗଲେ ବୋଲି ଗୋରା ଚାନ୍ଦ ।
ସବୁ ନର ନାରୀ ମାନେ ରୁଣ୍ଡ ହୋଇ ସ୍ଥାନେ ସ୍ଥାନେ
କାନ୍ଦନ୍ତି ହୋଇଣ ଗଦଗଦ ହେ । ୧ ।
ଦଳେ ଦଳେ ହୋଇ ଆସି ଶଚୀ ଅଗଣେ ପ୍ରବେଶି
ବିଲୋକନ୍ତି ମାତାଙ୍କ ଦୁର୍ଦ୍ଦଶା ।
ପାଗଳିଣୀ ପ୍ରାୟ ହୋଇ କାନ୍ଦେ ବିଷ୍ଣୁପ୍ରିୟା ଦେଈ
ଅସହନ ସେ କରୁଣ ଭାଷା ହେ । ୨ ।
ଏହି କାଳେ ଗଦାଧର ହରି ଦାସ ଭକ୍ତବର
ଶଚୀଙ୍କ ଚରଣ ତଳେ ପଡ଼ି ।
ବୁଝାଇ ବୁଝାଇ କେତେ କହିଲେ ସେ ନାନା ମତେ
ତେବେ ଶୂନ୍ୟ ନୋହେ ତାଙ୍କ ରଡ଼ି ହେ । ୩ ।
ଶ୍ରୀବାସଙ୍କର ଘରଣୀ ସେ ମାଳିନୀ ଠାକୁରାଣୀ
ନାରାୟଣୀ ସହିତରେ ଆସି ।
ଶାଶୁ ବୋହୂ ବେନି ଜନେ ନାନା ପ୍ରବୋଧ ବଚନେ
ବାରମ୍ବାର କହନ୍ତି ଆଶ୍ୱାସି ହେ । ୪ ।

ଶଚୀ ଦେବୀଙ୍କ ଭଗିନୀ                ସେ ପ୍ରବଣ ଆସି ପୁଣି
ବୁଝାଇଲେ କେତେ ପରକାରେ ।
ଗର୍ଭଧାରିଣୀ ଜନନୀ                କେବେ ନ ହୁଅନ୍ତ ତୁନି
ବାଉନି କାନ୍ଦନ୍ତ ବାରମ୍ବାର ହେ । ୫ ।
ଯେ ଯେତେ ବୁଝାଉଛନ୍ତ                ଶଚୀ ମାତା ନ ବୁଝନ୍ତ
ବୋଲନ୍ତ ମୋ ନମାଇଁ ନମାଇଁ ।
ନେତ୍ର ଯୁଗୁଁ ବହେ ଲୁହ                ବେଳୁଁ ବେଳ ଉଠେ କୋହ
ଅଚେତନେ ପଡ଼ନ୍ତ ଧୁମାଇଁ ହେ । ୬ ।
ଏ ଦାରୁଣ ଦଶା ଦେଖି                ଧୈର୍ଯ୍ୟ କେ ପାରିବ ରଖି
ନବଦ୍ୱୀପେ କ୍ରନ୍ଦନ ଚହଳ ।
ଦୁଃଖୀ ବଇଷ୍ଣବ ଦାସ                ଛାଡ଼ଇ ଦୀର୍ଘ ନିଶ୍ୱାସ
ନୟନରୁ ଢାଳ ଅଶ୍ରୁ ଜଳ ହେ । ୭ ।



( ରାଗ—ଦୀର୍ଘ ଛନ୍ଦ,        ତାଳ—ତ୍ରିପୁଟା )

ଉଷା କାଳେ ସାରି ସ୍ନାନ                ସକଳ ମହାନ୍ତ ଗଣ
ଆସିଲେ ଗୌରାଙ୍ଗ ଦରଶନେ ।
ପ୍ରଭୁ ଯାଇଛନ୍ତ ଚାଲି                ମନ୍ଦିର ପଡ଼ିଛି ଖାଲି
ପୂର୍ଣ୍ଣ ମାତ୍ର ଆକୁଳ କ୍ରନ୍ଦନେ ହେ । ୧ ।
ଆକୁଳେ ପଣ୍ଡିତ ହୋଆ                କାନ୍ଦୁଛନ୍ତ ବିଷ୍ଣୁପ୍ରିୟା
ଶଚୀଙ୍କର ଶୋକ ଅସମ୍ଭାଳ ।
ଗଦାଧର, ହରି ଦାସ                ବୋଧୁଛନ୍ତ ରହି ପାଶ
ସବୁରି ନୟନେ ଅଶ୍ରୁ ଜଳ ହେ । ୨ ।

ଶ୍ରୀ ନିତ୍ୟାନନ୍ଦଙ୍କୁ ଗୃହେଁ    ବାହ୍ମଣୀ ପରସ୍ତ ହୋଇ
ପଚାରନ୍ତି ଶଚୀ ମାତା କାନ୍ଦି ।
ରେ ଗୁଣମଣି ନିତାଇ    ମୋହର ନିମାଇଁ କାହିଁ ?
ଖୋଜିଆଣ ବୁଲି ସାହି କନ୍ଦରେ । ୩ ।
ପାଷଣେ ପରାଣ ବାନ୍ଧି    ନିତାଇ କହନ୍ତି ବାନ୍ଦି
ଆଗୋ ମାତା କି ପଚାର ମୋତେ ।
ପ୍ରାଣର ଭାଇ ନିମାଇଁ    ଏ ନଦୀୟା ପୁରେ ନାହିଁ
ପଥିକ ସେ କାଟୁଆର ପଥେ ଗୋ । ୪ ।
ଧଇର୍ଯ୍ୟ ଧର ଜନନୀ    ନୁହ ଆଜ ପାଗଳିନୀ
ଗୌରାଙ୍ଗ ଛାଡ଼ିଲେ ଗୃହ ବାସ ।
ଏହିମତେ ସର୍ବ ଜନେ    ବୁଝାନ୍ତି ଶୋକ ବଚନେ
କାନ୍ଦି କହେ ବଇଷ୍ଣବ ଦାସ ହେ । ୫ ।

—*—

( ରାଗ—କଳସା,    ତାଳ—ଏକତାଳୀ )

ଯିବାରୁ ନଦୀୟା ଚନ୍ଦ୍ର କାଞ୍ଚନ ନଗରେ ।
ବୁଡ଼ିଲେ ଭକତ ସର୍ବେ ସନ୍ତାପ ସାଗରେ ହେ । ୧ ।
ଗୌରାଙ୍ଗ ବିଚ୍ଛେଦେ ନବଦ୍ୱୀପ ନର ନାରୀ ।
ଝୁରନ୍ତି ଅତି ଆକୁଳେ ନେତ୍ରୁ ଢାଳି ବାରି ହେ । ୨ ।
ଅଦ୍ୱୈତ ଶ୍ରୀବାସ ନରହରି ଗଦାଧର ।
ମୁରାରି, ମୁକୁନ୍ଦ, ବାସୁ, ସେ ଚନ୍ଦ୍ରଶେଖର । ୩ ।
ଶ୍ରୀ ରଘୁନନ୍ଦନ, ବ୍ରହ୍ମାନନ୍ଦ, ବକ୍ରେଶ୍ୱର ।
କାନ୍ଦନ୍ତି ଅବନୀ ଲୋଟି ହୋଇଣ ଅଧୀର ହେ । ୪ ।
ନିତ୍ୟାନନ୍ଦ, ହରି ଦାସ କାନ୍ଦନ୍ତି ଆକୁଳେ ।
କାନ୍ଦେ ବଇଷ୍ଣବ ଦାସ ଭାସି ଅଶ୍ରୁ ଜଳେ ହେ । ୫ ।

( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ନବଦ୍ୱୀପେ ଗୋଳ ବନ୍ଦନ ଚହଳ
ପଡ଼ିଗଲା ଅହରହ ।
ପଶୁ ପକ୍ଷୀ ତାଙ୍କ ସହି ନ ପାରନ୍ତି
ଶ୍ରୀ ଗୌରଚନ୍ଦ୍ର ବିରହ । ୧ ।
ଗଛ ପତ୍ର ଯେତେ କାନ୍ଦନ୍ତି ସମସ୍ତେ
ଶୁଭେ ହାହାକାର ଧ୍ୱନି ।
କାନ୍ଦଇ ଜାହ୍ନବୀ ଗୋରା ଗୁଣ ଭାବି
କାନ୍ଦେ ନଦୀୟା ଅବନୀ । ୨ ।
ନବଦ୍ୱୀପ ବାସୀ ପ୍ରାଣୀ ରାଶି ରାଶି
ସଭିଙ୍କର ଲୋତକ ଧାର ।
ଗୌରାଙ୍ଗ ବିହନେ ସୁଖ ନାହିଁ ମନେ
ଭକ୍ତେ ହେଲେ ଦରମର । ୩ ।
ଶ୍ରୀବାସ ଅଙ୍ଗନ ଦିଶେ ଅଶୋଭନ
ଏକା ଗୌରଚନ୍ଦ୍ର ବିନୁ ।
ସଂକୀର୍ତ୍ତନ ଲୀଳା ଶୋଭା ନ ପାଇଲା
ନ ଥିବାରୁ ଶଚୀ ସୂନୁ । ୪ ।
ସବୁ ସୁଖ ଶିରୀ ଗୌର ନେଲେ ହରି
ସଭିଙ୍କ ମନରେ ଦୁଃଖ ।
ବଇଷ୍ଣବ ଦାସ ହୋଇଲା ନିରାଶ
ନ ଦେଖି ଗୌର ଶ୍ରୀମୁଖ । ୫ ।



( ରାଗ—ଫର୍ଦ୍ଦଗୁନ୍ଦ, ତାଳ—ତ୍ରିପୁଟା )

କାଞ୍ଚନ ନଗରେ ଯାଇଁ ଶ୍ରୀ ଶଚୀ ସୁତ ନିମାଇଁ
ଯଥା କାଳେ ହୋଇଲେ ପ୍ରବେଶ ।
କେଶବ ଭାରତୀ ପଦେ ପ୍ରଣମି ଭକ୍ତି ଗଦ୍‌ଗଦେ
ମନ କଥା କରନ୍ତି ପ୍ରକାଶ । ୧ ।
ସମ୍ମୁଖେ ସନ୍ନ୍ୟାସୀବର କଲ୍ୟାଣ ବାଞ୍ଛି ସତ୍ୱର
ମୁଖେ ଉଚ୍ଚାରିଲେ ନାରାୟଣ ।
ଆଜ ବଡ଼ ଭାଗ୍ୟ ମୋର ବୋଲି ହୋଇ ତୋଷଭର
ପୁଚ୍ଛା କଲେ ନିମାଇଁଙ୍କି ପୁଣ । ୨ ।
କି କାର୍ଯ୍ୟେ ହେ ଶଚୀ ସୁତ ମୋର କୁଟୀରେ ଆଗତ
କହ ବାବା ସଂଶୟ ଫିଟାଇ ।
ଭାରତୀ ଗୋସାଇଁଙ୍କର ମୁଖୁଁ ଶୁଣି ତତପର
କର ଯୋଡ଼ି କହନ୍ତି ନିମାଇଁ । ୩ ।
ତବ ପଦେ ଏହି ଭିକ୍ଷା ଦିଅନ୍ତୁ ସନ୍ନ୍ୟାସ ଦୀକ୍ଷା
ଆସିଛି ମୁଁ ବଡ଼ ଆଶା କରି ।
ଧେନବ କୌପୀନ ଡୋର ଅଭିଳାଷ ଅଛି ମୋର
ଏଣୁ ଘରୁ ଆସିଛି ବାହାରି । ୪ ।
ଦାରୁଣ ସଂସାର ଜ୍ୱଳା କୃଷ୍ଣ ନାମେ ବାଧା ଦେଲା
ତହିଁ ମୋ'ର ନାହିଁ ପ୍ରୟୋଜନ ।
ସନ୍ନ୍ୟାସ ଆଶ୍ରମେ ଇଚ୍ଛା ପୂର୍ଣ୍ଣ କର ମନ ବାଞ୍ଛା
ଚରଣେ କରୁଛି ନିବେଦନ । ୫ ।
ଶୁଣି କେଶବ ଭାରତୀ ହୋଇଲେ ବିସ୍ମୟ ମତି
ନିରେଖନ୍ତି ଗୌରଙ୍କ ଶ୍ରୀମୁଖ ।
ବିଲୋକି ଲାବଣ୍ୟ କାନ୍ତି କିଛି କହି ନ ପାରନ୍ତି
ବୈଷ୍ଣବ ଦାସର ମନେ ଦୁଃଖ । ୬ ।

( ରାଗ—ମଙ୍ଗଳ ଗୁଜ୍ଜରୀ, ତାଳ—ଏକତାଳୀ )

ଏମନ୍ତ ସମୟେ ଚନ୍ଦ୍ରଶେଖର ଆଚାର୍ଯ୍ୟ ।
ପ୍ରବେଶ ହୋଇଲେ ତହିଁ ହୋଇଣ ଅଧୈର୍ଯ୍ୟ ।
କେଶବ ଭାରତୀ ପଦେ କରି ନମସ୍କାର ।
ନମିଲେ ଗୌରଙ୍କ ପାଦପଦ୍ମେ ତତପର । ୨ ।

ମୃଦୁ ହାସେ ମହାପ୍ରଭୁ ଶ୍ରୀଶଚୀ ଦୁଲାଳ ।
ବୋଇଲେ ଅଇଲ ତୁମ୍ଭେ ହୋଇଅଛି ଭଲ । ୩ ।
ଏତେ କହି ଭାରତୀଙ୍କି କଲେ ସମ୍ଭାଷଣ ।
ପ୍ରଣତି ନତି ବହିଲେ ସନ୍ନ୍ୟାସ କାରଣ । ୪ ।

ଭାରତୀ ବୋଲନ୍ତି ଶୁଣ ଆହେ ବିଶ୍ୱମ୍ଭର ।
ସନ୍ନ୍ୟାସ ଦେବାକୁ କମ୍ପଇ ମୋ କଳେବର । ୫ ।
ଏ ତୁମ୍ଭ ଲାବଣ୍ୟ କାନ୍ତି ତରୁଣ ବୟସ ।
ଜନ୍ମ ଅବଧିରୁ ଜାଣି ନାହିଁ ଦୁଃଖ କ୍ଲେଶ । ୬ ।

ନବୀନ ଯୁବକ ତୁମ୍ଭେ ସୁକୁମାର ଅତି ।
ସନ୍ନ୍ୟାସ ଦୀକ୍ଷା ଦେବାରେ ନ ବଳେ ମୋ ମତି । ୭ ।
ଅପତ୍ୟ ସନ୍ତାନ ପୁଣି ନାହାନ୍ତି ତୁମ୍ଭର ।
ଘରଣୀ ନବଯୁବତୀ ଅଛନ୍ତି ଆବର । ୮ ।

ବୃଦ୍ଧା ଶଚୀ ଦେବୀଙ୍କର ଏକମାତ୍ର ସୁତ ।
ସନ୍ନ୍ୟାସୀ ହେବାକୁ କେହ୍ନେ ବଳାଉଛ ଚିତ୍ତ । ୯ ।
ପଞ୍ଚାଶ ବର୍ଷ ଟପିଲେ ତେବେ ଦିନା ବସ୍ତ୍ର ।
ସଂସାର ବାସନା ମାନସରୁ ହୁଏ ତୁଚ୍ଛ । ୧୦ ।

ଏଣୁ ସନ୍ନ୍ୟାସୀ କରିବା ପାଇଁକି ତୁମ୍ଭଙ୍କୁ ।
ଇଚ୍ଛା ନୁହଇ ମୋହର ଥରୁଅଛି ବୁକୁ । ୧୧ ।

ଏ ନୁହେଁ ବୟସର ସିଦ୍ଧ ଆହେ ଗୌରହରି ।
ଯଦି ସନ୍ନ୍ୟାସ କାରଣେ ଅଛ ମନ କରି । ୧୨ ।
ଫେରି ଯାଇ ନିଜ ଗୃହେ କଣ୍ଟକ ନଗରୁ ।
ଅନୁମତି ଆଣି ଜନନୀଙ୍କ ନିକଟରୁ । ୧୩ ।

ଆଉରି ସବୁଙ୍କ ଠାରୁ ଆଣି ହେ ବିଦାୟ ।
ସ୍ୱପତ୍ନୀଙ୍କି ନିରାଶା ନ କର ଦୟାମୟ । ୧୪ ।
ଏ ବିନୁ କେସନେ ମୁହିଁ କେବଣ ବିଧିରେ ।
ହସ୍ତକ୍ଷେପ କରିବଇଁ ଅଣ ଉଚିତରେ । ୧୫ ।

ପ୍ରେମର ମତ୍ତତା ତୁମ୍ଭ ଭାବର ଉଚ୍ଛ୍ୱାସ ।
ବିଲୋକନ କରି ଲଭେ ସଂଶୟ ବିଶେଷ । ୧୬ ।
ପ୍ରେମ-ସ୍ୱେଦ ଘଟରେ ଜରଜର ସୁନା ଅଙ୍ଗ ।
ହୁଁ କାର ଧ୍ୱନି ନର୍ତ୍ତନ ରଙ୍ଗର ତରଙ୍ଗ । ୧୭ ।

ଭକ୍ତିର ଅଷ୍ଟ ସାତ୍ତ୍ୱିକ ବିକାର ଲକ୍ଷଣ ।
ପ୍ରକାଶ ପାଉଛି ଚମତ୍କାରେ ବିଲକ୍ଷଣ । ୧୮ ।
ଏକ ହେ ଆଶ୍ଚର୍ଯ୍ୟ ଗୌର ତେଜପୁଞ୍ଜ ଦେହ ।
ଅଦ୍ଭୁତ ଶ୍ରୀମୁଖ ଜ୍ୟୋତି ବ୍ରଜଭାବେ ସ୍ନେହ । ୧୯ ।

ଜାଣେ ମୁଁ ନିଶ୍ଚୟ ତୁମ୍ଭେ ଜଗତ କାରଣ ।
ଇଚ୍ଛାରେ ମାନବ ଦେହ କରିଛ ଧାରଣ । ୨୦ ।
ତବ ଉପଦେଶ ଦାତା ଯୋଗ୍ୟ ମୁଁ ନୁହଇଁ ।
ନିଜ ଗୁଣେ କୃପା କରି ବାହୁଡ଼ ଗୋସାଇଁ । ୨୧ ।

ଏ କଥା ଶ୍ରବଣେ ମହାପ୍ରଭୁ ବିଶ୍ୱମ୍ଭର ।
କାନ୍ଦି କାନ୍ଦି କୃତାଞ୍ଜଳି ପୁଟେ ପୁନବାର । ୨୨ ।
କହି ଆରମ୍ଭିଲେ ତହିଁ ମନର କଥାଟି ।
ଶୁଣି ବୈଷ୍ଣବ ଦାସର ହୃଦୟ ଯାଏ ଫାଟି । ୨୩ ।

( ରାଗ—ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ଯୋଡ଼ି କର ଦୁଇ କହନ୍ତି ନିମାଇଁ
କେଶବ ଭାରତୀ ପାଶେ ।
ଆପଣଙ୍କୁ ମୁହିଁ ନସ କରିବଇଁ
ଆଜି ବା ଏ ଅବକାଶେ ହେ । ୧ ।

ଧର୍ମ୍ମ ତତ୍ତ୍ୱ କିବା ଜାଣେ ମୁଁ ତ ସେବା
କରି ନାହିଁ ସଦଗୁରୁ ।
ସଂସାରକୁ ଆସି ଜଞ୍ଜାଳର ପାଶି
ନ ଛେଦିଲେଟି ଆଦ୍ୟରୁ ହେ । ୨ ।

ଦୁର୍ଲ୍ଲଭ ଜନମ ଗଲା ଅକାରଣ
କ୍ଷଣ ଭଙ୍ଗୁର ଏ ଦେହ ।
ଏଥିକଲେ ହେଲା ବୁଢ଼ିବତ ଭେଳା
ଏମନ୍ତ କଥା ନ କହ ହେ । ୩ ।

ଯଦି ଏ ଶରୀର ଧ୍ୱଂସ ଗ୍ରହଣୀର
ହୋଇଯାଏ ଅବା କାଳେ ।
ତେବେ କେଉଁମତ ବୈଷ୍ଣବ ସଙ୍ଗତ
ଲଭିବଇଁ ଅବହେଳେ ହେ । ୪ ।

ହେ ସନ୍ନ୍ୟାସୀ ବର ନିରାଶ ନ କର
ଘେନ ମମ ନିବେଦନ ।
ତବ ଅନୁଗ୍ରହେ ସୁନିର୍ମଳ ଦେହେ
କରିବି କୃଷ୍ଣ ଭଜନ ହେ । ୫ ।

କୃଷ୍ଣ ଦାସ ହୋଇ ସନ୍ନ୍ୟାସୀ ବୋଲାଇ
ଆଚରିବ ଭିକ୍ଷାଟନ ।

ସେ ଗୃହ ସଂସାରେ      କଦର୍ଯ୍ୟ ବ୍ୟାପାରେ
ଅଛି କିବା ପ୍ରୟୋଜନ ହେ । ୬ ।
କ୍ଷଣିକ ସୁଖରେ      ମଜ୍ଜି ଥାନ୍ତି ନରେ
ନ ଜାଣି ସିନା ଗୋସାଇଁ ।
ଅନିତ୍ୟ ସଂସାର      ମିଥ୍ୟା କାରବାର
ଲେଶେ ତହିଁ ସୁଖ ନାହିଁ ହେ । ୭ ।
ନ ହୁଅ କୁଣ୍ଠିତ      ଦିଅ ଦୀକ୍ଷା ମନ୍ତ୍ର
ସନ୍ନ୍ୟାସର ଯେ ବିଧାନ ।
ହେନ ମୋର ଦୈନ୍ୟ      ଚଞ୍ଚଳ ଆପଣ
କର ଦିବ୍ୟ ଅବଧାନ ହେ । ୮ ।
ଏତେ ବୋଲି ଗୌର-      ଗଦ୍‌ଗଦ ହୋଇ ଭୂରି
ଅତି ବ୍ୟାକୁଳତା ଭାବେ ।
ଭାରତୀ ଚରଣ      କଲେ ଆଲିଙ୍ଗନ
ଗୋସାଇଁ ବସିବା ଠାବେ । ୯ ।
ହୋଇଲେ ସନ୍ତ୍ରସ୍ତ      ଭାରତୀ ତେବେତ
ଆକୁଳ ଅନ୍ତରେ ତହିଁ ।
ନିମାଇଁଙ୍କ ଭାବ      ଏ ଦାସ ବୈଷ୍ଣବ
ବୁଝି ପୁଣି ନ ବୁଝଇ । ୧୦ ।



( ରାଗ—ପାର୍ଶ୍ୱଗ୍ରନ୍ଦ,     ତାଳ—ତ୍ରିପୁଟା )

ଗୌରଙ୍କ ବ୍ୟାକୁଳ ଚିତ୍ତ      ଦେଖି କେ ଧରିବ ଧୃତି
ଅନନ୍ତର କେଶବ ଭାରତୀ ।
ନ ପାରିଲେ ସ୍ଥିର ହୋଇ      ସନ୍ନ୍ୟାସୀ କରିବା ପାଇଁ
ତତକ୍ଷଣେ ବଳାଇଲେ ମତି ହେ । ୧ ।

ପୂର୍ବେ ପ୍ରଭୁ ବିଶ୍ୱମ୍ଭର ସ୍ୱପ୍ନେ ଦିବ୍ୟ ମନ୍ତ୍ର ସାର
ନଦୀ ଯୋଗେ ହୋଇଥିଲେ ପ୍ରାପ୍ତ ।
ଭାରତୀଙ୍କି ସେହି ମନ୍ତ୍ର ଜଣାଇଁ ଦେଲେ ତ୍ୱରିତ
ନିଜ ମନ୍ତ୍ରେ ଆପଣେ ଦୀକ୍ଷିତ ହେ । ୨ ।
ଦଣ୍ଡୀ ଭାରତୀ ଗୋସାଇଁ ଯେ କାଳେ ଗୌରଙ୍କୁ ତହୁଁ
ସନ୍ନ୍ୟାସୀ ଦୀକ୍ଷାକୁ ଦେବେ ବୋଲି ।
ଭାବେ ହୋଇଲେ ସମ୍ମତ ନାମ ପ୍ରେମେ ହୋଇ ମତ୍ତ
ନିମାଇଁଙ୍କ ଗ୍ଲାନି ଉଠେ ଫୁଲି ହେ । ୩ ।
କେଶବ ଭାରତୀ କର୍ଣ୍ଣେ ମନ୍ତ୍ର କହନ୍ତେ ଆପଣେ
ଜଗଦ୍‌ଗୁରୁ ନିମାଇଁ ସୁନ୍ଦର ।
ପ୍ରକାରନ୍ତେ ହେଲେ ଗୁରୁ ପ୍ରେମ ବାଞ୍ଛା କଳ୍ପତରୁ
ସେହି ସେ ଭାରତୀ ସନ୍ନ୍ୟାସୀଙ୍କର ହେ । ୪ ।
ସକଳ ମରମ କଥା ଭାରତୀ ବୁଝିଲେ ତଥା
ମନେ ମନେ ହୋଇଲେ ଉଲ୍ଲାସ ।
ଧନ୍ୟ ମଣି ଆପଣାକୁ ପ୍ରଶଂସନ୍ତି ନିମାଇଁଙ୍କୁ
ଭଣେ ଦୁଃଖୀ ବଇଷ୍ଣବ ଦାସ ହେ । ୫ ।



( ରାଗ—ଦୀର୍ଘ ବଙ୍ଗଳାଶ୍ରୀ, ତାଳ—ଆଠତାଳୀ )

ମନେ ମୋଦ ବହି ଭାରତୀ ଗୋସାଇଁ
କହିଲେ ଶଚୀ ସୁତଙ୍କୁ ।
ହେ ବତ୍ସ ନିମାଇଁ ଯେ ମନ୍ତ୍ର ଦେବଇଁ
ଶୁଣାଇଲ ଯା ଆମ୍ଭଙ୍କୁ ।
ଆହେ ଦୟାନିଧି ! ନିଜମନ୍ତ୍ରେ ରଖି ନିଜ ସିଦ୍ଧି । ୧ ।

ଏ ବଚନ ଶୁଣି    ଗୌର ନଶାମଣି,
ନାଚନ୍ତି ଆନନ୍ଦ ହୋଇ ।
ଗମ୍ଭୀର ନାଦରେ    ହରି ଶବଦରେ
ଅବନୀ ଦେଲେ କମ୍ପାଇଁ ।
ପ୍ରଭୁ ସୁନା ହାଣ୍ଡି । ପୁଲକରେ ଫୁଲଇଲେ ଗୁଣ୍ଡି ! ୨ ।
ଶ୍ରୀଅଙ୍ଗ ମାଧୁରୀ,    ଚମତ୍କାର ଶିରୀ,
ଅତ୍ୟନ୍ତ ଲବଣ୍ୟ ତୋରା ।
ଅନ୍ତରେ ଘୂରାନ୍ତି,    ମରକତ କାନ୍ତି,
ମିଶା ମିଶି କଳା ଗୋରା ।
ସେ ଯେ ରାଈ କାହ୍ନୁ । କଳି ଯୁଗେ ଧନ୍ୟ ଶଚୀ ସୂନୁ । ୩ ।
ଆନନେ ସଘନେ,    ଅରୁଣ ନୟନେ
ଥକ ଥକ ପ୍ରେମ ବାରି ।
ମଧୁର ଅଧରେ,    ମୃଦୁ ହସନରେ,
ଅମିୟ ପଡ଼ଇ ଝରି ।
ନବ ଦ୍ୱୀପ ଶଶୀ । ସନ୍ନ୍ୟାସ ଦୀକ୍ଷାକୁ ଛନ୍ତି ରସି । ୪ ।
କାଞ୍ଚନ ନଗରୀ    ବାସୀ ନରନାରୀ,
ଆବାଳ ବୃଦ୍ଧ ବନିତା ।
ଦର୍ଶନ ଲାଳସେ,    ଘରହୀ ନବାସେ
ମିଳି କରୁଛନ୍ତି ଚିନ୍ତା ।
କି ସୁନ୍ଦର ଛଇ । ସନ୍ନ୍ୟାସ ହୋଇବେ କାହିଁ ପାଇଁ । ୫ ।
ଦେଖି ଲୋକ ସବେ,    ହା ହା କାର ରବେ
କୁହନ୍ତି କଥା ବାରତା ।
ଏ ଦୁଃଖୀ ବୈଷ୍ଣବ    ଦାସ ମନେ କ୍ଷୋଭ
ବଦନୁ ନ ସ୍ଫୁରେ କଥା ।
କି ବୟସେ ଗୋରା । ହେବେ ଦଣ୍ଡ କମଣ୍ଡଳ ଧରା । ୬ ।

( ରାଗ—ଲଳିତ କେଦାର, ତାଳ—ପଦ୍ମପଟ )

ନଦିଆ ନଗର ବାସିନୀମାନେ ।
ଶ୍ରୀ ଗୌରାଙ୍ଗ ରୂପ ଦେଖି ନୟନେ ॥
ଏକୁ ଆରେ କୁହା କୁହି ହୁଅନ୍ତି ।
ଆହା ଏ ପୁରୁଷ ଲାବଣ୍ୟ କାନ୍ତି ॥
ଚାହିଁଲେ ନ ପଡ଼େ ନେତ୍ର ପଲକ ।
ଅତି ଅନୁପମ ଶ୍ରୀଅଙ୍ଗ ଥାକ ॥
ଧନ୍ୟ ସେ ଜନନୀ ଯେ ଥିଲେ ପାଇ
ସଉଭାଗ୍ୟବତୀ ସିନା ଗୋ ସେହି ॥
ଗର୍ଭେ ଧରିଥିଲେ ଏ ପରି ସୁତ ।
ଦେବକୀ ସମାନ ହେବେ ସେହିତ ॥
ପତି କରି ଯାଇ ଅଛୁ ଗୋ ଯେହୁ ।
ତାହାର ସୁକୃତ କେ ଅବା କହୁ ॥
ତ୍ରୈଲୋକ୍ୟ ମୋହନ ମୂରତି ଗୋଟି ।
ସମାନ ନୋହିବ ମଦନ କୋଟି
ଏ ପରି ପୁରୁଷ ରତନ ମଣି ।
ସନ୍ନ୍ୟାସୀ ହୋଇବେ କନ୍ଥା ମିଡଣୀ ॥
ଅଙ୍ଗ ପ୍ରତିଅଙ୍ଗ ଶୋଭାକୁ ଚାହିଁ ।
କେଉଁ ଯୁବାନାରୀ ନୋହିବ ମୋହି ॥
ଏ ବୟସେ କନ୍ଥା ଛାଡ଼ିଲେ ଘର ।
ଆହା ଏ ପୁରୁଷ କେଡ଼େ ସୁନ୍ଦର ॥
ଜନନୀ ଏହାଙ୍କ ଯେ ହୋଇଥିବେ ।
କେଉଁ ପରି ସେହୁ ପ୍ରାଣ ଧରିବେ ॥

ପତ୍ନୀ ଏହାଙ୍କର ଯେବଣ ନାରୀ ।
ରହିବକ ସେ ଗୋ ଜୀବନ ଧରି ॥
ଏହାଙ୍କ ସନ୍ନ୍ୟାସ କେବା ସହିବ ।
କି ସମୟେ କି କରୁଛି ଦଇବ ॥
ଏତେ ଅନୁମାନ କାହିଁଆ ନାରୀ ।
ସଭିଙ୍କ ନୟନୁ ବହଇ ବାରି ॥
ବ୍ୟାକୁଳେ କାନ୍ଦନ୍ତି ଗୌରଙ୍କୁ ଚାହିଁ ।
ହେ ସୁନ୍ଦର ଯୋଗୀ ହୁଅ କିମ୍ପାଇଁ ॥
ତୁମ୍ଭ ରୂପ କାନ୍ତି ଅପୂର୍ବ ଶୋଭା ।
ସନ୍ନ୍ୟାସ ନ କରି ଫେରି ହେ ବାବା ॥
ଆପଣାର ଘର ସଂସାର କର ।
ଏ ଯୁବା ବୟସେ ନୁହ ସଂସାର ।
ଏପରି ସକଳେ ଆକୁଳେ ଭଣି ।
ବୈଷ୍ଣବ ଦାସର ମନେ ଗ୍ଳାନି ॥



( ରାଗ—ରାମକେରୀ, ତାଳ—ଆଠତାଳୀ )
କାଞ୍ଚନ ନଗରବାସୀଙ୍କି ଚାହିଁ ନିମାଇଁ ଚାନ୍ଦ ।
କହନ୍ତି ମଧୁର ବଚନେ ତୁମ୍ଭେ କେହି ନ କାନ୍ଦ । ୧ ।
ଆଶୀର୍ବାଦ କର ସକଳେ ମୋର ଶୁଭ ମନାସି ।
ତୁମ୍ଭମାନଙ୍କର କଲ୍ୟାଣେ ମୁହିଁ ହେବି ସନ୍ନ୍ୟାସୀ । ୨ ।
ପିତା ମାତା ସର୍ବେ ମୋହର ମନେ ନ କର ଦୁଃଖ ।
ସଦ୍ଗୁରୁ ପ୍ରସାଦେ ଗ୍ରହଣ କରିବଇଁ ମୁଁ ଭେଖ । ୩ ।
ଶ୍ରଦ୍ଧା ମୋର କୃଷ୍ଣ ଚରଣେ ଆଜ ବିକାଇ ମଥା ।
ଏଥିପାଇଁ କେହି ନ କହ ଆଉ ନିଷେଧ କଥା । ୪ ।

କୃଷ୍ଣ ଭଜନରେ ସାରିବ ଏ ମୋ ରୂପ ଯୌବନ ।
ସେ ମୋ ପ୍ରାଣପତି ଜାଣ ହେ ଏଥେଁ ନୁହ ବିମନ । ୫ ।
କୃଷ୍ଣ ବିନେ ଅନ୍ୟ ଶରଣ ନାହିଁ କାହିଁ ମୋହର ।
ଏ କାର୍ଯ୍ୟରେ ବାଧା ନ ଦିଅ ଭଜ କୃଷ୍ଣ ପୟର । ୬ ।
ନମାଇଁ ସୁନ୍ଦର ଏମନ୍ତ ସବିନୟ ବଚନେ ।
କାଞ୍ଚନ ନଗରବାସୀଙ୍କି ନିବେଦିଲେ ସଘନେ । ୭ ।
ତଦନ୍ତେ ଭାରତି ଗୋସାଇଁ ପଦେ ପ୍ରଣାମ କରି ।
ମାଗିଲେ ସନ୍ନ୍ୟାସ ଭିକ୍ଷା ସେ ନବଦ୍ୱୀପ ବିହାରି । ୮ ।
ଗୌରଙ୍କ ଅନ୍ତର କଥା ଯେ ଅନୁଭବରେ ଜାଣି ।
ଭାରତି ଗୋସାଇଁ ନୟନୁ ଝରେ ଲୋତକ ଶ୍ରେଣୀ । ୯ ।
ସନ୍ନ୍ୟାସ ବିଧାନ କାର୍ଯ୍ୟରେ ହେଲେ ସେ ଉଦଯୋଗୀ ।
ବଇଷ୍ଣବ ଦାସ ଝୁରଇ ଗୌର କରୁଣା ଲାଗି । ୧୦ ।

—:O:—

( ରାଗ—କଳସା, ତାଳ—ଏକତାଳୀ )

ମହାପ୍ରଭୁ ଗୌରହରି ଶ୍ରୀ ଶଚୀ ନନ୍ଦନ ।
କୃଷ୍ଣ ନାମ ରସେ ମଜ୍ଜାଇଲେ ସର୍ବ ମନ ହେ । ୧ ।
ଆରଦିନ ପ୍ରାତଃକାଳେ ସ୍ନାନାଦି ବଢ଼ାଇ ।
ଉଦ୍‌ବେଗ ଚିତ୍ତ ସନ୍ନ୍ୟାସ ଦୀକ୍ଷା ନେବା ପାଇଁ ହେ ।
କୃଷ୍ଣ ପୂଜା ଆରମ୍ଭିଲେ ସେ ଆଗ୍ରହେ ଚନ୍ଦ୍ର ।
ସନ୍ନ୍ୟାସ କର୍ମ ବିଧି ନ ଦ୍ରବ୍ୟ କଲେ ଯତ୍ନ ହେ । ୩ ।
ନମାଇଁଙ୍କ ଚୌଦିଗେ ବୈଷ୍ଣବଗଣ ଘେରି ।
ଉଚ୍ଚ ସ୍ୱରେ ସକଳେ ବୋଲନ୍ତି ହରି ହରି ହେ । ୪ ।
ଗୁରୁଙ୍କ ସମ୍ମୁଖେ ଗୌର ହୋଇ ପୁଟାଞ୍ଜଳି ।
ସନ୍ନ୍ୟାସ ଦୀକ୍ଷାକୁ ଭିକ୍ଷାରୂପେ କଲେ ଅନ ହେ । ୫ ।

ମୁଣ୍ଡନ କରିବେ କେଶ ଶୂନ୍ୟ କରି ମଥା
ଏ ବିଷୟେ ସମସ୍ତଙ୍କ ହେବେ ମହା ବ୍ୟଥା ହେ । ୬ ।
ଗୁରୁ ଚିକ୍କଣ କୋମଳ ଘନ କେଶ ରାଶି ।
କାଟି ପକାଇବେ ଗୌର ଚିତ୍ତ ଅଭିଳାଷୀ ହେ । ୭ ।

ପୂର୍ବେ ଯେଉଁ କେଶଚୂଡ଼ା ତ୍ରୈଲୋକ୍ୟ ମୋହନ ।
ମୋହିଥିଲା ବ୍ରଜାଙ୍ଗନାମାନଙ୍କର ମନ ହେ । ୮ ।
ଯେବଣ କେଶ କୁସୁମହାରେ ପାଏ ଶୋଭା ।
ଯେଉଁ କେଶ ପାଶ ସର୍ବଜନ ନୟନଲୋଭା ହେ । ୯ ।

କେଉଁ କେଶଚୂଡ଼ା ଧ୍ୟାନେ ବ୍ରହ୍ମା ଶିବ ଭୋଳା ।
ଯେଉଁ କେଶଚୂଡ଼ା ଚନ୍ଦ୍ର ନାରଦ ବାଉଳା ହେ । ୧୦ ।
ସେ କେଶ ମଣ୍ଡନ ହେବେ ଜଗତ ଗୋସାଇଁ ।
ଲୋକହିତେ ସନ୍ନ୍ୟାସର ଦୀକ୍ଷା ନେବା ପାଇଁ ହେ । ୧୧ ।

ଇଚ୍ଛାମୟଙ୍କ ଇଚ୍ଛାରେ କେବା ଦେବ ବାଧା ।
କେ ଭାଙ୍ଗି ପାରିବ ଗୌରଙ୍କର ଯେ ଶରଧା ହେ । ୧୨ ।
ମଧୁ ନାପିତେ ହକାରି ଭାରତୀ ଗୋସାଇଁ ।
ଆଜ୍ଞା ଦେଲେ ଗୌର କେଶ ମୁଣ୍ଡାଇବା ପାଇଁ ହେ । ୧୩ ।

ଯଥାକାଳେ ଶ୍ରୀ ନିମାଇଁ ନାପିତର ପାଶେ ।
ସରାଗେ ବସିଲେ ମଥା ମୁଣ୍ଡନର ଆଶେ ହେ । ୧୪ ।
ଅତି ଭକ୍ତିମାନ ଅଟେ ମଧୁ ନାପିତ ।
ଗୌର କେଶ ଛେଦିବାରେ ନ ବଳେ ତା ଚିତ୍ତ ହେ । ୧୫ ।
ହସ୍ତ ନ ଛୁଆଁଏ ଗୌରଚନ୍ଦ୍ର ମସ୍ତକରେ ।
ମହାତ୍ରାସେ ତାର ଅଙ୍ଗ କମ୍ପେ ଥରଥରେ । ୧୬ ।
କଣ୍ଟକ ନଗରବାସୀ ଯେ ନାରୀ ପୁରୁଷେ ।
କାନ୍ଦୁଛନ୍ତି ଅତିଶୟ ବିକଳ ମାନସେ ହେ । ୧୭ ।

କାନ୍ଦଇ ମଧୁ ନାପିତ ନ କାଟଇ କେଶ ।
ନିମାଇଁଙ୍କୁ କି କହିବ ନ ବଳେ ସାହସ ହେ । ୧୮ ।
ବସୁରଇ ମନେ ମନେ ସନ୍ତାପିତ ହୋଇ ।
କାହିଁକି ଏ କୁଳେ ମୋତେ ଜନ୍ମ ଦେଲା ବିହି ହେ । ୧୯ ।
କିପରି ଛେଦନ କରିବି ମୁଁ ପ୍ରଭୁ କେଶ ।
କର ସହିତେ ଥରୁଛି ମୋ ସର୍ବାଙ୍ଗ-ଦେଶ ହେ । ୨୦ ।
ଏତେ ଭାଷି ନିମାଇଁଙ୍କ ଶ୍ରୀଚରଣ ଧରେ ।
ବୈଷ୍ଣବ ଦାସ ଦୁଃଖ ନିବେଦନ କରେ ହେ । ୨୧ ।

—ଃ୦ଃ—

( ରାଗ—ଫର୍ଦ୍ଦ ବଙ୍ଗଳାଶ୍ରୀ,   ତାଳ—ଆଠତାଳୀ )

ମଧୁ ନାପିତର ମନ କଥା ଜାଣି କହନ୍ତି ପ୍ରଭୁ ନିମାଇଁ ।
କିମ୍ପା କରୁ ଡେରି ପକାଅ କତୁରି ମୋର କେଶପାଶ ତୁହି ॥
ଆରେ ମଧୁଶୀଳ ! ଅନ୍ୟ କିଛି ମନେ ତୁ ନ ଭାଳ । ୧ ।
କର ଯୋଡ଼ି ତହିଁ ନାପିତ କହଇ ଘେନ ପ୍ରଭୁ ମୋ ପ୍ରାର୍ଥନା ।
ଏ ସୁନ୍ଦର କେଶ କେମନ୍ତେ କାଟିବି ମୋ ହାତ ଥରୁଛି କିନା ॥
ଆହେ ଦୟାମୟ ! କମ୍ପେ କଳେବର ଅତିଶୟ । ୨ ।
ତୁମ୍ଭ ଶିରେ ହାତ ଦେଇ ମୁଁ କେମନ୍ତ ଛୁଇଁବି ପୁଣିକା ପାଦ ।
ଯା' କହ ତା' କହ ନସହେ ମୋ ଦେହ ପାଣିହୋଇଯାଏ ହୃଦ ।
ଆହେ ସୁନାଛବି ! ମନ ଯାହା ହୁଏ କି କହିବି ?
ଅଧମ କୁତ୍ସିତ ନାପିତ କୁଳରେ ଜନମ ମୋହର ମାତ୍ର ।
କେବଣ ସାହସେ ତବ ଶିରଦେଶେ ହେବି କ୍ଷୁରଦେବା ପାତ୍ର ॥
ଆହେ ଗୌରହରି ! ସର୍ବାଙ୍ଗ ଥରୁଛି ଏଣୁକରି । ୪ ।
ନାପିତର ବାଣୀ ଶୁଣି ଗୌରମଣି କହନ୍ତି ମଧୁର ସ୍ୱରେ ।
ଆଜ ଅବଧିରୁ ଦ୍ୱିଜ ବୋଲାଇବୁ କ୍ଷୁର ନ ଧରିବୁ କରେ ॥
ଘେନ ଏହି ସୂତ୍ର ତୋର କଣ୍ଠେ ଦେଲିରେ ନାପିତ । ୫ ।

ଭଜ କୃଷ୍ଣ ହରି ଏ ବୃତ୍ତି ପାଶୋରି ମହାସୁଖେ ନଅ ଦିନ ।
ଅଭାବ ନୋହିବ ତୋତେ କେଉଁ ଦ୍ରବ୍ୟ ଜାଣ ଏ ସତ୍ୟବଚନ ॥
କୃଷ୍ଣ କୃପା ଲଭ । ମନରୁ ବରଜ ଦିଅ କ୍ଷୋଭ । ୬ ।
ଆଜି ମାଧବକ ମୋ କେଶ କାଟିଥାଅ କାଲିଠାରୁ ହେବୁ ଦ୍ୱିଜ ।
କୃଷ୍ଣ ମନ୍ତ୍ରଦାନେ ଦେଶେ ସ୍ଥାନେ ସ୍ଥାନେ ଗୁରୁବୋଲାଇବୁ ହେଜ
ତୋର ବଂଶେ କେହି । ଏ ହୀନ ବୃତ୍ତି କରିବେ ନାହିଁ । ୭ ।
ନିମାଇଁଙ୍କ ଆଜ୍ଞା ନକରି ଅବଜ୍ଞା ସେ ଭକ୍ତବର ନାପିତ ।
ଶ୍ରୀଚରଣ ତଳେ ଦଣ୍ଡବତ କରି ପ୍ରଭୁ ଶିରେ ଦେଲ୍ ହାତ ।
ମୁଣ୍ଡାଇଲ୍ କେଶ । ବେନି କରଯୋଡ଼ି ମାଗେ ତୋଷ । ୮ ।
ଆନନ୍ଦ ମାନସେ ମୁଣ୍ଡନର ଶେଷେ ମହାପ୍ରଭୁ ବିଶ୍ୱମ୍ଭର ।
କରି ଗଙ୍ଗାସ୍ନାନ ସନ୍ନ୍ୟାସ କାରଣେ ଚଳିଲେ ତହୁଁ ସତ୍ୱର ॥
ଭାରତୀଙ୍କ ପାଶେ । ସର୍ବ ଶୁଭଲଗ୍ନ ଅବକାଶେ । ୯ ।
ଦଇବେ ମକର କୁମ୍ଭ ସନ୍ଧିସ୍ଥଳ ବସନ୍ତର ଆଗମନେ
ଦେଲେ ସନ୍ୟାସଦୀକ୍ଷା ଭାରତୀ ଗୋସାଇଁ ଯଥାର୍ଥ ମନ୍ତ୍ର ବିଧାନେ ॥
ଭକ୍ତମାନେ ଘେରି । ସର୍ବେ ବୋଲୁଛନ୍ତି ହରି ହରି । ୧୦ ।
ନାମ ସଂକୀର୍ତ୍ତନେ ବଇଷ୍ଣବଗଣେ ଉନ୍ମତ୍ତେ କରନ୍ତି ନୃତ୍ୟ ।
ନିମାଇଁ ଚନ୍ଦ୍ରଙ୍କ ସନ୍ନ୍ୟାସ ବିଧାନ ଶୁଭେ ହେଲ୍ ସମାପତ ।
ବଇଷ୍ଣବ ଦାସ । କରେ ଗୌର ପଦେ ସଦା ଆଶ । ୧୧ ।

—*—

**ସ ମା ପ୍ତ**

ମୁଦ୍ରାକର—ଦୁର୍ଗା ପ୍ରେସ, ଝାଂଟବନ୍ ସାହି, କଟକ-୧